# ପ୍ରଥମ ଅଙ୍କ

## (ପ୍ରଥମ ଦୃଶ୍ୟ)

[ ଏକ ଗ୍ରାମ୍ୟ ଅଞ୍ଚଳର ଡାକ୍ତରଙ୍କ ଡାକ୍ତର ଖାନା--ଉପସ୍ଥିତ ଜଣେ ରୋଗୀ—ଉଦ୍ଧବ ସ୍ୱାଇଁ, ଯନ୍ତ୍ରଣାରେ ବେଳେ ବେଳେ ଛଟପଟ ହେଉଛି । ଜମିଦାରଙ୍କ ଗୁମାସ୍ତା ଶ୍ୟାମ ମିଶ୍ରଙ୍କ ଚାକରାଣୀ ନେତ ଆସିଲା । ]

ନେତ —ଡାକ୍ତର ବାବୁ ! (ଡାକ୍ତର ବିପରୀତ ଦିଗକୁ ମୁହଁକରି ଔଷଧ ତିଆରି କରୁଥାନ୍ତି । )

ଡାକ୍ତର —( ନେତକୁ ନ ଦେଖି ) କ'ଣ ? ପାଳିଜର ନା ଏକୋଇ ଜର କା ତିନାଦିନିଆ ଜର ?

ନେତ --ଜର ତ ସବୁ ଦିନେ ଆସୁଛି ।

ଡାକ୍ତର —କମ୍ପ ?

ନେତ —କମ୍ପ ହଉଚି ।

ଡାକ୍ତର – ପାଣି ପିଆ ଲାଗୁଚି ?

ନେତ —ଲାଗୁଥିବ······

ଡାକ୍ତର —ଥିବ କ'ଣ ? ଲାଗୁଚି ତ କହିବା···ଥିବ କ'ଣ ? ·· ଜର ଛାଡ଼ଗଲା ବେଳକୁ ପାଣିପରି ଝାଳ ବୋହି ଯାଉଚି ତ ?

ନେତ — ତେବେ କ'ଣ ଜାଣିନ ?

ଡାକ୍ତର — ମୁଁ ଜାଣିବ ନାଇଁତ କ'ଣ ଏହି ଉଦ୍ଧବ ସ୍ୱାଇଁ ଏଠି ବଇଶ ସେ ଜାଣିବ ?·· ବସ, ଔଷଧ ନେଇଯିବ । ପାନକୁଛ ପଇସା ଛପାନ ଦେବ--ଧନକୁ ତିନ ପାନ—ଜର ନଥିଲ ବେଳେ ଖାଇବ । ମାଛ, ମାଂସ, ଘିଅ, ଶାଗ, ଖଟା, ପଖାଳସବୁ ବନ୍ଦ—ଦାମ୍ ଆଣିଚ ?

ନେତ — ମୁଁ କ'ଣ ଔଷଧ ନେବାକୁ ଆଇଚ ?

ଡାକ୍ତର — ଆଜ କାହାଁକ ଆସିଛ, (ବୁଲପଡ଼ ନେତକୁ ଦେଖି) ଓ · ?

ନେତ — ବାବୁ କହୁଛନ୍ତି, ତେବେ ଟିକଏ ଝଟ ଆସ ।

ଡାକ୍ତର — ଅସମ୍ଭବ !

ନେତ — ଏଁ ।

ଡାକ୍ତର — ମୁଁ ଯାଇ ପାରବ ନାହିଁ ।

ଉଦ୍ଧବ — ଡାକ୍ତର ବାବୁ ! (ଯନ୍ତ୍ରଣାରେ)

ଡାକ୍ତର — ଓହୋ···ଟିକଏ ରହ ଭଲ (ନିଜ କାମରେ ମନ ଦେଲେ । )

ନେତ — ଡାକ୍ତର ବାବୁ !

ଡାକ୍ତର — କି ମୁସ୍କିଲ !

[ ଏତିକିବେଳେ ମଙ୍ଗରାଜ ପଶି ଆସିଲା ]

ମଙ୍ଗରାଜ—ଅବଧାନ ଡାକ୍ତର ବାବୁ !

ଡାକ୍ତର — ତୁମେ ପୁଣି କେଉଁଠିଥିଲ ? ତମ ଜର କ'ଣ ଛାଡ଼ନାହିଁ ।

ମଙ୍ଗରାଜ—ଛାଡ଼ ଥିଲେ କଣ ପାରହୋଇ କାହିଁକ କୋଶେ ବାଟ ମୁଁ ଦୌଡ଼ ଥାନ୍ତି ।

ନେତ —ବାବୁ ପଠେଇଛନ୍ତି । ତମକୁ ଡାକି ନବାକୁ !

ଡାକ୍ତର —ଦେଖୁଛ ତ ମୁଁ ଏଠି ଗୋଟାଏ ସଂସାର ମେଲି ବସିଛି ? ବାବୁଙ୍କୁ କହିଦିଅ ମୋତେ ବେଳ ନାହିଁ । ମୁଁ ଯାଇ ପାରିବ ନାହିଁ । ପନ୍ଦରଦିନ ତଳୁ ଯାଇଥିଲି । ...କାଲି ପୁଣି ଔଷଧ ପଠେଇ ଦେଇଛି...ଆଜି ଆଉ କାହିଁକି ଯିବି ?

ନେତ —ଜର ଯମା ଛାଡୁ ନାହିଁ ।

ଡାକ୍ତର —ଛାଡୁନାହିଁ ! କାହିଁକି ଛାଡୁନାହିଁ ? ପଥ୍ୟରେ ରହିବେ ନି ନିତି ସକାଳୁ ଉଠି ମୁଣ୍ଡ ଧୋଇବେ, ଜର ଛାଡିବ କେମିତି ?

ଉଦ୍ଧବ —ମୋ କଥା ଟିକିଏ ବୁଝ ବାବୁ !

ଡାକ୍ତର —ଓହୋ...ତୁ ଟିକିଏ ରହ ଭଲା ।... ମଙ୍ଗରାଜ ତମହାଲି କ'ଣ କହୁଚନ୍ତି ?

ମଙ୍ଗରାଜ—ନିତି ଶୀତବେଳକୁ ହୁ ହୁ ହୋଇ ମାଡ଼ି ଆଉଛି ।

ନେତ —ମତେ କ'ଣ କହୁଚନ୍ତି ବାବୁ ମୁଁ ଯିବି ?

ଡାକ୍ତର —ତେମେ ତ ବଡ଼ ଜଟିଳ ଲୋକ ମୁଁ ଦେଖୁଚି । କହିଲି ପରା ମୋ ଯିବା ହୋଇ ପାରିବ ନାହିଁ । ଆଇଚ ଯଦି ପାନ ଔଷଧ ନେଇ ଯା ।

ନେତ —ବାବୁ ତ ମତେ ଜଗର କରି ପଠେଇଚନ୍ତି ତମକୁ ଡାକି ନେବାକୁ, ମୁଁ ପୋଇଲି ମରିବାର ଲୋକ ବାଟ ମାରଣା କାମ ମୁଁ କାହିଁକି କରିବି, ମୁଁ ଔଷଧ ନେବି ନାହିଁ । ତମେ ଆସ ।

ଡାକ୍ତର —ଆଚ୍ଛା ମଙ୍ଗରାଜେ, ତେମେତ ଦେଖୁଛ, ଗାଁ ଗାଁ କମର ମ୍ୟାଲେରିଆ ବ୍ୟାପି ଯାଇଛି । ପଟାଳି ପରି ଲୋକେ

ପଡ଼ୁଛନ୍ତି, ମୁଁ ଯୁକ୍ତିଟା ସମସ୍ତଙ୍କ କଥା ଦେଖିବ । ଏଇ ନଈଟା ପାରି ହୋଇ ତମ ଗାଁରେ ପାଦ ଥୋଇଲେ ଧକଟ, ଗ୍ରାମ ଟଙ୍କା । ଏଇ ଆମର ଗାଁ କଥା ଦେଖନ୍ତୁ, କାଲି ନଧି ସାହୁ ଘରକୁ ଯାଇଥିଲି । ଠନ୍ ଠନ୍ ତିନି ଟଙ୍କା ଗଣି ଦେଲା, କଟରେ ଉଦ୍ଧବ ଦେଇ ନ ଥିଲ ?

ଉଦ୍ଧବ —(ଉକ୍ସି ଉକ୍ସି)ଧ ପଇସେ ଦେଇଥିଲେ ଆଜ୍ଞା ଜର ଛାଡ଼ିଲା ନାହିଁ ।

ମଙ୍ଗରାଜ—ଦେଇ ନ ଥିଲେ କ'ଣ ଡାକ୍ତର ବାବୁ ମିଛରେ କହନ୍ତେ ?

ଡାକ୍ତର —ଦେଇଥିଲ ଦେ ! (ଥିଲା ଉପରେ ଜୋର ଦେଇ)

ନେତ —(ସେମିତି ଜୋରରେ)ଆଜି ଆମେ କ'ଣ ଟଙ୍କା ଦେବୁ ନାହିଁ ।

ଡାକ୍ତର —ତେମେ ବଡ଼ ଉଦ୍ଧତ ଲୋକ ମୁଁ ଦେଖୁଛି । କଏ ମନା କଲା । ତମେ ଟଙ୍କା ଦବନାହିଁ । ମୋର ବେଳନାହିଁ ବୋଲି ମୁଁ ଯିବନି ।

ନେତ —ମଲା ବାଟ ଟିକେଇ ଖୋଜ······

ଡାକ୍ତର —କେଇ ଖୋଜ ! ! ମାଇଲ ମାପରେ ମାପିଦେଲେ ପୁରା ଦୁ ଫର୍ଲଙ୍ଗ··· !

ନେତ —ତେବେ ତେବେ ଯିବ ନାହିଁ ।

ଡାକ୍ତର —କି ନ ଦେଖୁଡ଼ ବଡ଼ା କଥା ! !

ନେତ —ହଉ ! ହେଲା ! ! ଦେଖିବା ! ! ! (ନେତ ଚାଲିଗଲା, ଡାକ୍ତର ସେମିତି ହତଚାଷ୍ଟାହ ହୋଇ ଠିଆ ହୋଇଥାନ୍ତି । )

ମଙ୍ଗରାଜ—ସେ କ'ଣ ଆଜ୍ଞା ଏମିତ ମୁହଁ ଘୁଞ୍ଚି ଦେଇ ଚମ୍ ଚମ୍ ହୋଇ ଚାଲିଗଲା। (ଡାକ୍ତର ଗମ୍ଭୀର ହୋଇ କ'ଣ ଭାବୁଥାନ୍ତି)

ଉଦ୍ଧବ —(ପୂର୍ବପରି ଯନ୍ତ୍ରଣାରେ) ଡାକ୍ତର ବାବୁ···

ଡାକ୍ତର —(ଅନ୍ୟ ଆଡ଼କୁ ଚାହିଁ) ଓହୋ···ଏଇଟା ମତେ ଏଠି ଭଲ ଲାଗୁନାହିଁ···ମଙ୍ଗରାଜେ ଦେଖିଲ ସେ ଚାଲିଗଲା ନା ବାଟରେ କେଉଁଠି ଅଟକିଲା।

ମଙ୍ଗରାଜ—ନାଇଁତ ଆଜ୍ଞା; ଦୁମ ଦୁମ ହୋଇ ପଣତ ଉଡ଼େଇ ଯାଉଥିଲା।

ଡାକ୍ତର —ଆଜି ବୋଧେ ଫେରିବ ନାହିଁ।

ମଙ୍ଗରାଜ—କାହିଁ ? ଏକ ମୁହାଁ ହୋଇତ ଚାଲୁଛି, ଫେରିବାର ଲକ୍ଷଣ ତ କିଛି ମାଲୁମ ପଡ଼ୁ ନାହିଁ । ···ନା ସେ ବାଙ୍କ ବୁଲି ତୋଟା ଭିତରେ ଲୁଚି ଗଲାଣି।

ଡାକ୍ତର —ଯାଉ !

ମଙ୍ଗରାଜ—ସେ ଶ୍ୟାମ ମିଶ୍ରଙ୍କ ଘର ଲୋକଟି ଆଜ୍ଞା ?

ଡାକ୍ତର —ହଁ !

ମଙ୍ଗରାଜ— ମିଶ୍ରେ କ'ଣ ନ ଦେଲେ ବାଲା। ତାଙ୍କର ନାହିଁ କ'ଣ ?

ଡାକ୍ତର —ଅଛି ବାବୁ, ସବୁ ଅଛି, ଜମି ବାଡ଼ି, ହଳ, ବଳଦ, ଜମିଦାର ଘରେ ଗୁମାସ୍ତା ଚାକିରି··· ଆମ ବେଳକୁ ଦେଇ ଟଙ୍କାଏ। ଗଲା ନାହିଁ ବୋଲି ମୁହଁ ଛାଟି ଦେଇ ଚାଲିଗଲା···ମଙ୍ଗରାଜେ ଦେଖି ତମ କାଗଜଟା।

ମଙ୍ଗରାଜ—(ଖୋଜି) ଆହା-ହା, କାଗଜଟା ତ ଛାଡ଼ିଦେଇ ଆସିଛି ଆଜ୍ଞା।

ଡାକ୍ତର—ଛୁଡ଼ ଦେଇ ଆସିଛ ? ଖାତାଟା କ'ଣ ହେଲା ?
(ଖାତା ଦେଖୁ ଦେଖୁ) ଆମେ କ'ଣ ଜାଣିବୁ, ଜମିଦାରଙ୍କ ଗୁମାସ୍ତା ଯେତେବେଳେ, ଜମିଦାର ଆଙ୍ଗୁଠି ଦେଖେଇ ଦେଲେ ତେମେ ବାହା ହେବ। ତମକୁ କ'ଣ ଆମେମାନେ ଖାତିର କରୁନୁ ! ଡାକିଦେଲେ ତ ତମ ଦୁଆରେ ଯାଇ ହାଜର ହୋଇ ଯାଉଚୁ। ଆଜିଆମ ମାନ ତେମେ କାଇଁକି ରଖିନ ନାହିଁ। ନାଁ କ'ଣ କହୁଛ ମଙ୍ଗରାଜେ ?

ମଙ୍ଗରାଜ—ଏ କଥା ଆଉ କହିବାକୁ ଅଛି ଆଜ୍ଞା, ହଜ ଯାଉଣା କଏ କାହିଁକି ଛୁଡ଼ିବ।

ଡାକ୍ତର—ଦେଖୁଚ ତ ଗଲା ମାଇଁ ବୋଲି ମୁହଁ ଘୁଞ୍ଚି ଦେଇ ଚାଲିଗଲା। ...ତମକୁ କେଇପାନ ଔଷଧ ଦେଇଥିଲି ମଙ୍ଗରାଜେ ?

ମଙ୍ଗରାଜ—ଛ' ପାନେ।

ଡାକ୍ତର—ଛ' ପାନ, ଆଜବି ସେହି ଛ ପାନ ଦେଉଚି।

ଉଦ୍ଧବ—ମୁଁ କ'ଣ ମରିବି ଡାକ୍ତର ବାବୁ ?

ଡାକ୍ତର—ହଁ ମର...। କି ଅବୁଝା ଲୋକଟାରେ ! ଦେଖୁଚ ତ ମୁଁ ଜଣେ ଲୋକ...କେତେ ଆଡ଼କୁ ହେବି। (ଔଷଧ ଗୁଡ଼ା ଠିକ୍ କରୁ କରୁ) ଗଲା ମାଇଁ ବୋଲି ଧମକ ଦେଇ ଚାଲିଗଲା, ଗଲା ତ ଗଲା ତା ଧମକରେ କ'ଣ ମୁଁ ଘର ଦ୍ୱାର ଭାଙ୍ଗି ଚାଲିଯିବି କି ?

ମଙ୍ଗରାଜ—ହିଂଇତିରେ ବାପା ଭଙ୍ଗା ଭଙ୍ଗା କରିବା ଜନ୍ମ ଆସି ପହଞ୍ଚି ଗଲେଣି।

ଡାକ୍ତର—କଏ ?

ମଙ୍ଗରାଜ—ମିଶ୍ରଙ୍କ ଘାନଘର ।

ଡାକ୍ତର—କଏ ରାମ ?

ମଙ୍ଗରାଜ—ହଁ ।

ଡାକ୍ତର—ରାମ ଏଣିକି ଆଉଚି ।

ମଙ୍ଗରାଜ—ହଁ (ଡାକ୍ତର ହାତରୁ ଔଷଧ ପୁଡ଼ିଆ ନେଇ ମୁଣ୍ଡେଇଲା)

ଡାକ୍ତର— ସେ କାହିଁକି ଆସୁଛି ?

ମଙ୍ଗରାଜ—ବୁଝିଁ ଆଜ୍ଞା, କାହିଁକି ଆସୁଚି ?

ଡାକ୍ତର—ନାହିଁମ ମଙ୍ଗରାଜେ, ସେ ନାଲକୁ ବନସୀ ପକେଇ ଆସୁଥିବ । ବନସୀ ଖଣ୍ଡଟା ଆଣିଚି ନା ନାହିଁ ଦେଖିବଟି ।

ମଙ୍ଗରାଜ—ବନସୀ ତ ନାହିଁ ଆଜ୍ଞା ! କାନ୍ଧରେ ଗୋଟାଏ ଟାଙ୍ଗିଆ ପକେଇ……

ଡାକ୍ତର—ଟାଙ୍ଗିଆ-ଟାଙ୍ଗିଆ ପକେଇ ସେ ମୋ ଡାକ୍ତରଖାନାକୁ ଆସୁଚି ?

ମଙ୍ଗରାଜ—ସେଥି କ'ଣ ଆସିଲା ପରି ଆସୁଚି, ରାବଣାସୁର ଯୁଦ୍ଧକୁ ଗଲା ପରି ସେ ଟାଙ୍ଗିଆ ପକେଇ ଧାଇଁଛି ।

ଡାକ୍ତର—ଆସୁ, ଆସୁ । (ବେପରୁଆ ହୋଇ ଆସିଲେ)

ମଙ୍ଗରାଜ—(ବାହାରକୁ ଚାହିଁ) ଠିକ ଗୋଡ଼ାଇଁ କୁଆଡ଼େ ?

ରାମ—(ବାହାରୁ) ଡାକ୍ତର ବାବୁ ଅଛନ୍ତି ?

ମଙ୍ଗରାଜ—ହଁ ! (ଡାକ୍ତର ବାବୁ ଚୁପ୍ କରି ଅନ୍ୟ ଘରକୁ ଉଠିଗଲେ ରାମ ଆସିଲା )

ରାମ—କାହାନ୍ତି ଡାକ୍ତର ବାବୁ ! ( ଉଦ୍ଧବ ହାତ ଠାରି ଦେଖେଇ ଦେଲା ।)

ରାମ—ଡାକ୍ତର ବାବୁ···ଡାକ୍ତର ବାବୁ···ହୋ ଡାକ୍ତରବାବୁ !

ଡ଼ାକ୍ତର —(କଥା କହୁ କହୁ ଆସିଲେ)ଶୁଣୁଚ,କ'ଣ କରୁଚ କୁହ ।

ରାମ —ନୂଆ ବୋଉଙ୍କ ଜର ଛାଡ଼ୁନାହିଁ କାଇଁକି ?

ଡ଼ାକ୍ତର —ଦେଖ ବାପା ! ସଜ୍ଜନରେ ଏ ଦେଶକୁ ବଳାଡ଼ ଦଳ ଆଣି ଏଠି ଯିଏ ମେଲେରିଆ ଜର ସୃଷ୍ଟି କରିଛନ୍ତି— ଏ ଜର ପାଇଁ ଔଷଧ ଆବିଷ୍କାର କରି ଯିଏ ଧନ୍ୟ ହୋଇଛନ୍ତି ଏ କଥା ତାଙ୍କୁ ପଚାର ସେ ଏହାର ଜବାବ ଦେବେ ।

ରାମ —କେମେ ପଗ ଡ଼ାକ୍ତର ?

ଡ଼ାକ୍ତର —ମୁଁ ତ ଔଷଧ ଦଉଚ !

ରାମ —କି ଔଷଧ ଦଉଚ ? କୋଉ କାଳର ଗୋଦାମରଦ ପୋକା ମଇଦା ଆଉ ଚକ୍ ଖଡ଼ି ଗୁଣ୍ଡରେ କେବେ କାହା ଜର ଛାଡ଼ିଲଣି ।

ଡ଼ାକ୍ତର —ସେ କଥା ଜାଣିଚ ଯଦି ବଂଶ ସାରା ଏଠାକୁ ଦଉଡ଼ି ଆସୁଚ କାଇଁକି ? କାଇଁକି ତମ ଭଉଣୀ ମୋ ଗୋଡ଼ ହାତ ଧରି ଘରକୁ ଡ଼ାକେଇ ନେଉଛନ୍ତି ! କହୁଚ କ'ଣ ନା······ଗୋଦାମ ରଦ୍ଦ ! ! ଆରେ··· ··

ରାମ —ଏଠି ଆଉ ଡ଼ାକ୍ତର ନାହାନ୍ତି ବୋଲି, ନହେଲେ ମୋ ଭଉଣୀ ପୁଣି ତମ ଗୋଡ଼ ଧରିବେ, କ'ଣ ଆଉ କହିବ ? ଅଇଲ ବେଳେ ନୂଆ ବୋଉ ବାଣୀ ପଚାରିଥିଲେ । ନଇଲେ ତମର ଏ ବାହାଡ଼ା ଦାନ୍ତ ଦଶ ଆଜି ଉଡ଼େଇ ଦେଇଥାନ୍ତି । ବୁଝିଲ !

ଡ଼ାକ୍ତର —ଏଁ ଏଁ-ଏଁ କ'ଣ ? କ'ଣ କହୁ ଯାଉଚ ?
ଶୁଣୁଚ—ଶୁଣୁଚ ମଙ୍ଗରାଜେ !

ରାମ —ନେଉ ତମକୁ ଡାକବାକୁ ଆସିଥିଲ ଗଲ ନାଇଁ କାହିଁକି ?

ଡାକ୍ତର —ଗଲି ନାହିଁ ବୋଲି ତୁ ମୋଠାରୁ କୈଫିୟତ ତଲବ୍ କରିବାକୁ ଆସିଚୁ···କୈଫିୟତ !!

ରାମ —ମୁଁ କହୁଚି ଭଲ ଔଷଧ କେଉଠି ଲୁଚେଇ ରଖିଛ ବାହାର କରି ଚଞ୍ଚଳ ଆମ ଘରକୁ ଆସି-ନୂଆ ବୋଉଙ୍କୁ ଔଷଧ ଦିଅ। କାଲି ଏତେ ବେଳକୁ ଯଦି ଜର ନଛୁଡ଼େ ତେବେ ତମ ନଣ୍ଡକୁଳ ବଟିଗୁଡ଼େ ଯେଉଁ ଗୁଡ଼େରାଟି କଲେମି ଆମ୍ବ ଗୁବ ଆଣି ଘଟକଛେ, ରାତି ପାହିଲା ବେଳକୁ ଦେଖିବ ସେଥିରୁ ଗୋଟିଏ ନଥିବ, ଏ ଠାଙ୍କିଆରେ ହାଣି ସବୁ ଖୁଆଇ ଦେଇ ଯିବ । ଆଜ ତମର ଏଠି ଯେତେ ଶିଶି ବୋତଲ ଅଛି ସେ ସବୁ ଗୁଣ୍ଡା ହୋଇଯିବ । ମନେ ରହିଚି ? ଚଞ୍ଚଳ ଆସ । (ଚାଲିଗଲା)

ମଙ୍ଗରାଜ—ବାବାରେ ମୁଁ ରାବଣଶ୍ୱର କ'ଣ କହୁଥିଲି ଇଏତ ଏକାବେଳକେ ପବନ ପୁତ୍ର ହନୁମାନ !

ଡାକ୍ତର —ମଙ୍ଗରାଜେ !

ମଙ୍ଗରାଜ—ଆଜ୍ଞା !

ଡାକ୍ତର —ସବୁ ଶୁଣିଲତ !

ମଙ୍ଗରାଜ—ଶୁଣିଲି ଆଜ୍ଞା (ଔଷଧ ପୁଡ଼ିଆଟିକ ଗୋଟାଇ ନେଇ ହାତରେ ଧରି ଥାଏ) ଏ ଔଷଧ କ'ଣ ଦିନକୁ ତିନି ପାନ ଖାଇବ ଆଜ୍ଞା !

ଡାକ୍ତର —(ଅନ୍ୟମନସ୍କ ଭାବେ) ହଁ !

ଉଦ୍ଧବ —ମୋ କାମ ଆଜ୍ଞା ।

ଡାକ୍ତର —ଚୁପ ! ମଙ୍ଗରାଜ ମୁଁ ଗୁଲିଲି ।
ମଙ୍ଗରାଜ—କେଉଁଠିକି ଆଜ୍ଞା ?
ଡାକ୍ତର —ଥାନାକୁ ।
ଉଦ୍ଧବ —ଥାନାବାବୁଙ୍କୁ କ'ଣ ଜର ହୋଇଛି ଆଜ୍ଞା ।
ଡାକ୍ତର —(ଉଦ୍ଧବ କଥାକୁ କାନ ନ ଦେଇ) ହଁ

ମଙ୍ଗରାଜ ମୁଁ ଥାନାକୁ ଚାଲିଲି । ତେମେ ସବୁ ସାକ୍ଷୀ
(ଡାକ୍ତର ବାବୁ ଭିତରକୁ ଗଲେ)

ମଙ୍ଗରାଜ—(ଉଦ୍ଧବକୁ) ସାକ୍ଷୀ ଦ ଦାଲିଣି ଗୁଲିଆ ।
ଉଦ୍ଧବ —ତେମେ ଗୁଲ ମୁଁ ଔଷଧ ବ ପାନ ନେଇ ଯାଉଛି ।

(ମଙ୍ଗରାଜ ଗୁଲିଗଲେ)

ଉଦ୍ଧବ —(ଡାକ୍ତର ବାବୁଙ୍କୁ ଉଦ୍ଦେଶ୍ୟ କରି) ମୁଁ ତ କହୁଛି ଆଜ୍ଞା
ଏଇ ଥରକ ବାକିରେ ଚଳେଇ ଦିଅ । ଆର ପାଳିକି
ଦାମ୍ ଦେଇ ଦେବ, (ଡାକ୍ତର ହାତରେ ଖଣ୍ଡେ
ବାଡ଼ି ଧରି କହୁ କହୁ ଆସିଲେ)

ଡାକ୍ତର —ହାରାମ ଜାଦା...
ଉଦ୍ଧବ —ଗୁଲି ଗଲେଣି ଆଜ୍ଞା ।
ଡାକ୍ତର —ଏଁ
ଉଦ୍ଧବ —ପଇସା ନ ଦେଇ ଗୁଲି ଗଲେଣି ।
ଡାକ୍ତର —ଗୁଲି ଗଲେଣି ! ଉଦ୍ଧବ ତୁ ସାକ୍ଷୀ ।
ଉଦ୍ଧବ —(ନ ଶୁଣି ପାରିବାର ବାହାନା କରି) କ'ଣ ଆଜ୍ଞା ବାକି
ଦେବନାହିଁ ।

ଡାକ୍ତର —ହଁ ଦେବ, ଏଇନେ (ଟେବୁଲ ଉପରୁ ଔଷଧ ନେଇ
ଘୁଞ୍ଚାଆ ତା ହାତରେ ଦେଇ) ପ ହା ମେ ମତେ
କହୁଥିଲ ସବୁ ତ ଶୁଣିଛ ।

ଉଦ୍ଧବ —କାନକୁ କଷ୍ଟ ଶୁଭୁନାହିଁ ଆଜ୍ଞା—ଚକୁଳି ପିଠା ଅଣ୍ଡା ପୁରି ଖାଇ ଖାଇ ମୋ କାନ ତାବଦା ହୋଇ ଗଲାଣି ।

ଡାକ୍ତର —ଉଦ୍ଧବ ! ! !

ଉଦ୍ଧବ —ଟିକଏ ନାଡ଼ୀଟା ଦେଖିବ ନାହିଁ ଆଜ୍ଞା !

ଡାକ୍ତର —ତୁ ସାକ୍ଷୀ ହେବୁ ନାଇଁ ?

ଉଦ୍ଧବ —(କାନ୍ଦ କାନ୍ଦ ହୋଇ) ଅଧା କପାଳଟା ଆଜ୍ଞା ସବୁବେଳେ ଧମକୁଚି, ପାଟିଭ ପିଠା କଷ୍ଟ ରୁଚୁ ନାହିଁ ସକାଳୁ ଗାଧୋଇ ଦହି ପଖାଳ ଖାଇବି ।

ଡାକ୍ତର —ତୁ ଯା ଏଠୁ—ଦହି ଖା, ପଖାଳ ଖା, ନେଲେ ତ ଆରେ ସଡ଼ି ପଚି ମର ତମମାନଙ୍କ ମୁହଁ ମୁଁ ଦେଖିବନି । ଇଁ ନମକ୍ ହାରାମ ବେଇମାନ ସବୁ ! (ଭିତରକୁ ଗଲେ)

ଉଦ୍ଧବ —(ଡାକ୍ତରଙ୍କୁ ଶୁଣାଇ)ଗୁମାସ୍ତାଙ୍କ ଘର ଗାମ କଥା କହୁଛନ୍ତି ଆଜ୍ଞା, ବଡ଼ ଡବଷ୍ୟ ଜନ୍ତୁ ସେ ଗୋଖର ସାପ ଅଛି । ପଞ୍ଝାଏ ବାଜସ ଠୋକାକୁ ମେଳାଇ ରଖିଚି, ଧ କହିଲେ ମାଡ଼ ବସିବେ—ତ.କୁ ଦୂରୁ ଜୁହାର ବାବୁ, ମୁଁ ଯାଉଛି ଆଜ୍ଞା ଜୁହାରେ । ଆପଣ ତ କୁଆଡ଼େ ବାହାରିଲେଣି ଆଜ୍ଞା, ଦେଖୁଚ ଗୁମସ୍ତାଙ୍କ ଘରକୁ, ହଁ ଆଜ୍ଞା ତାଙ୍କ ଖବର ଆଗ ବୁଝନ୍ତୁ । (ଚାଲିଗଲା)

ଡାକ୍ତର—(ଉଦ୍ଧବର ଯିବା ବାଟକୁ ଚାହିଁ) ଏ ଦୁନିଆରେ କାହାର ଭଲ କରିବ ନାଇଁ । କାଲିକା ଟୋକାଟାଏ ମୋ ଦାନ୍ତ ଭାଙ୍ଗି ଦେବ ବୋଲି ଧମକ ଦେଇଗଲା ! ! ! ( ବ୍ୟାଗଟି ହାତରେ ଧରି) ହେଉ ।

(ବାହାରକୁ ବାହାରିଗଲା ବେଳେ ଦୃଶ୍ୟ ଶେଷ ହେଲା)

—* * *—

# ଦ୍ୱିତୀୟ ଦୃଶ୍ୟ

[ ମିଶ୍ରଙ୍କ ଘର ଅଗଣା, ରୁକ୍ମଣୀ ବ୍ୟସ୍ତ ହୋଇ ଆସିଲେ ]

ରୁକ —ନେଡ଼-ନେଡ଼- ଘଡ଼ିଏ ହେଲା ଟୋକାଟା ଗଲାଣି ଏତେବେଳେ ଯାଏ କରୁଛି କ'ଣ ? (ଡାକିଲେ) ନେଡ଼-ନେଡ଼—

ନେଡ଼ —(ଭିତରୁ) କ'ଣ ମା ?

ରୁକ —ସିଏ କୁଆଡ଼େ ଗଲେକି ? (ଶ୍ୟାମ ଆସିଲେ)

ଶ୍ୟାମ —କ'ଣ କହୁଛ ?

ରୁକ —ଟିକିଏ ଯାଇ ଦେଖ ଭଲା ?

ଶ୍ୟାମ —କ'ଣ ମୁଁ ଦେଖିବି । ସେତ ଡାକ୍ତରକୁ ଡାକିବାକୁ ଯାଇଛି ମୁଁ ଯିବି କାହିଁକି ?

ରୁକ —ତମେ କ'ଣ ଜାଣିନ ତା' ଢଙ୍ଗ ।
ସେଠି ଯାଇ କ'ଣ ନାହିଁ କ'ଣ କରୁଥିବ । କହୁଚି ତାକୁ ଅଟକାଅ ।

ଶ୍ୟାମ —ତମେ ସବୁ ଏତେ କଥା କହିଲ ମାନିଲା ନାହିଁ ।
ମତେ କହୁଚ ମୁଁ କ'ଣ କରିଥାନ୍ତି । ମୋ କଥା ମାନିବା ପିଲା ସେ !

ରୁକ —ନେଡ଼, ନେଡ଼ିଗିଲୁ, ହୋଲା ତାଙ୍କୁ ପିଟାଇଲାଣି କି ନାହିଁ ସେ ହେଲେ ଯାଇତାକୁ ବୁଝାଇ ଶୁଝାଇ ଫେରାଇ ଆଣ ।

ଶ୍ୟାମ —ତମେ ଏମିତି ବ୍ୟସ୍ତ କାହିଁକି ହଉଚ ଯେ ? ସେ ତ ଡାକ୍ତରକୁ ଡାକିବାକୁ ଯାଇଚି !!

ରୁକ୍ମ —ଡାକ୍ତର ନ ଆସିଲେ କ'ଣ ହୋଇଯିବ । ଗୋଟିଏ
ଦିନରେ ସତେ ଯେମିତି ମୋ ପ୍ରାଣ ଗୁଡ଼ି ଯାଉଚି !

ଶ୍ୟାମ —କିନ୍ତୁ ସେ ଡାକ୍ତର ନ ଆସିବ କାହିଁକି ? ଏମିତି
ଗୁରୁଠଙ୍କ ଭଜନ୍ତି ନେଲାବାଲା ସେ, ସାତ ଦିନ
ହେଲା ଔଷଧ ଦେଲଣି ଜର ଛାଡ଼ିବାକୁ ନାହିଁ—
ସେଥିରେ ପୁଣି ଭଜନ୍ତି ଗୁରୁଠଙ୍କ । ରାମ ଯାଇଚି,
ଭଲ କରିଚି, ତାଙ୍କୁ ଡାଆଆଣୁ—ମୁଁ ବି ଭଜନ୍ତି
ଗୁରୁଠଙ୍କ ଦେବ । ତମେ ଆସ ଭିତରକୁ ଆସ, ଜର
ଦେହଟାରେ ଆଉ ପଦାରେ ଠିଆ ହୁଅ ନାହିଁ ।
(ଆଗେ ଶ୍ୟାମ ଓ ପଛରେ ରୁକ୍ମଣୀ ଭିତରକୁ ଗଲେ
ପ୍ରାୟ ପରେ ପରେ ରାମ ଆସିଲା)

ରାମ —( ଅନ୍ତରାଳରେ ଗୋବଦ୍ଧକୁ ଉଦ୍ଦେଶ୍ୟ କରି )
ଗୋବଦ୍ଧ···ହେ ଗୋବଦ୍ଧ··· !

ଗୋବଦ୍ଧ—କ'ଣ କହୁଛ ?

ରାମ —ଆରେ ପିଞ୍ଜରା କାଠି ସବୁ ଏଇଠିକି ନେଇ ଆ···

ଗୋବଦ୍ଧ—ସେଠିକି ନେବ ?

ରାମ —ହଁ, ଏଇଠିକି ସେ ମୋଡାଟା ଆଣ ।
(୮।୯ ବର୍ଷର ପୁଅ ଗୋବଦ୍ଧ ଆସିଲା—ହାତରେ
ଗୋଟାଏ ଅଧା ତିଆରି ପିଞ୍ଜରା ଆଉ କେତେ କାଠି,
ଗୋଟାଏ ମୋଡା, ରାମ ପିଞ୍ଜରା ତିଆରି କରୁଥାଏ)

ଗୋବଦ୍ଧ—କେତେ କୁଆଡେ ଯାଇଥିଲ କହୁଛ ?

ରାମ —ଡାକ୍ତରର ଦାନ୍ତ ଭାଙ୍ଗିବାକୁ !

ଗୋବଦ୍ଧ—ଡାକ୍ତରର ଦାନ୍ତ ଭାଙ୍ଗିବାକୁ—କ'ଣ ଭାଙ୍ଗିଲ ?

ରାମ —ନା, କାଲି ଏଣ୍ଡକି ଆସିବେ ଏଇଠି ଭାଙ୍ଗିବି ।

ଗୋବନ୍ଦ—କକେଇ, କକେଇ ଘର୍ଙ୍କି ଯାଉ ୨ଟେ ନେଇ. ମୁଁ
ମୂଷା ଗାତରେ ପକାଇ ଦେବ ।

ରାମ —ହଉ ।

ଗୋବନ୍ଦ—ପିଞ୍ଜର କୋଉଦିନ ହେବ କକେଇ ?

ରାମ —ଆଜ ।

ଗୋବନ୍ଦ—ଆଜ ହବ ?

ରାମ —ହଁ

ଗୋବନ୍ଦ—ଆଜ୍ଞ ଚଢ଼େଇ ।

ରାମ —ଆଜ ଆଣିବା ।

ଗୋବନ୍ଦ—କ ଚଢେଇ ଆଣିବ କକେଇ ?

ରାମ —ତୁ କହ କ ଚଢେଇ ଆଣିବା ?

ଗୋବନ୍ଦ—କକେଇ—ଗୋଟାଏ ବଗ ।

ରାମ —ବଗ ?

ଗୋବନ୍ଦ—ସେଇ ଯେଉଁ ଗ୍ରେହି ବଟଣା ଆମ ପୋଖରୀ କୂଳେ
ଅଛୁ (ସୁର୍‌ରେ) ଗ୍ରେହି···ଧାନଖାଇ ଜୁହି—ଅଣ୍ଡାଦିଉ
ଲମ୍ବେଇ ପଶିଯାଏ ଗଡଉଇ, ଗଙ୍ଗେଇ କ'ଣ ଯାଣିଚ
କକେଇ··· ? ଗଙ୍ଗେଇ ଚ୍ଚଘ ଓିଚ୍ଚ !

ରାମ —ବଗ ଆଣିବା ନାଇଁରେ ଗୋବନ୍ଦ,ଅଣିବା ବାରମାସୀ

ଗୋବନ୍ଦ—ବାରମାସୀ, କେମିତିକା ହେଇ ?

ରାମ —ଏକଦମ ବଢ଼ିଆ, ବାର ମାସରେ ବାର ରଙ୍ଗ
ବଦଳେଇବ । ସୁର୍‌ଧଣ

"ଫଗୁଣରେ ଫଗୁରଙ୍ଗ ବୋଳି ହେଉ
ଚଇତରେ ପଚ ଧଳା
ବଇଶାଖ ଜ୍ୟେଷ୍ଠେ ଧୂଳି ଧୂସରିଆ
ଆଷାଢ଼ରେ ମେଘ କଳା"

ରୁକ୍ମି —(ଭିତରୁ) ସେଠି କିଏ କହେ ଗୋବିନ୍ଦ ?

ଗୋବିନ୍ଦ—କେକେଇ, ତମକୁ ବୋଉ ଖୋଜୁଥିଲା ।
(ବଡ଼ ପାଟିରେ) ବୋଉ କେକେଇ ଆଇଲେଣି ।

ରୁକ୍ମି —ତାଙ୍କୁ ଡାକିଦେଲୁ ଏଠିକି ।

ରାମ —ତୁ କହିଦେ ଗୋବିନ୍ଦ···ମୁଁ ଏଠି ଗୋଟାଏ କାମ କରୁଛି । ବୋଉ—ସେ ଯାଇ ପାରିବେ ନାହିଁ······ କାହିଁକି ତୁ ଦେଖିନୁ ଆସୁନୁ, ଆମର ପିଞ୍ଜରା ତିଆରି ହଉଛି ।

ରାମ —ଚୁପ ।

ରୁକ୍ମି —(ଭିତରୁ) ରାମ !

ରାମ —ଯାଉଛି ନୂଆ ବୋଉ ।

(ରୁକ୍ମିଣୀ ଆସିଲେ)

ରୁକ୍ମି —ତୁ ଡାକ୍ତର ଡାକି ଯାଇଥିଲୁ ?

ରାମ —ହଁ ନୂଆ ବୋଉ ।

ରୁକ୍ମି —ତତେ କିଏ କହିଥିଲା ?

ରାମ —କହିବ କିଏ ? ତମକୁ ଜର ହୋଇଛି—ମୁଁ ଡାକ୍ତର ଡାକି ଗଲି । ମତେ କହିବ କିଏ ?

ରୁକ୍ମି —ଡାକ୍ତରଙ୍କୁ ଡାକିଲୁ ?

ରାମ —ହଁ ।

ରୁକ୍ମି —ସେ ଘର ଆସିବାକୁ ମନା କରୁଥିଲେ ?

ରାମ —ସେ ଆସିବାକୁ ମନା କରୁଥିଲେ—ମୁଁ ତାଙ୍କୁ ଆସିବାକୁ କହିଲି ।

ରୁକ୍ମି —ଖାଲି ଏତିକି କହିଛ ନା ଆଉ କ'ଣ କହିଛ ?

ରାମ —(ନିରୁତ୍ତର)

ରୁକ —କାହିଁ କହୁନୁ—ଆଜି କ'ଣ କହିବ ?
ରାମ —କହିବ ନାହିଁ ।
ରୁକ —କହିବୁ ନାହିଁ ?
ରାମ —ଉହୁଁ ।
ନେତ —(ପ୍ରବେଶ କରି) ଡାକ୍ତର ବାବୁ ଆସିଲେଣି ମାଆ !
ରୁକ —ଆସିଲେଣି ? କାହାନ୍ତି—( ଦେଖିବାକୁ ଆଗେଇ ଗଲେ । ଏଇ ଅବସରରେ ରାମ ଗୋବନ୍ଦକୁ ଠାରି ଦେଇ ପଳେଇଲା-ପଛେ ପଛେ ଗୋବନ୍ଦ ମଧ ପଳେଇଲା । )
ରୁକ —ରାମ—ଆରେ ରାମ କୁଆଡେ ଗଲା । ଦେଖିବ ନେତ ଡାକ୍ତରଙ୍କ ନାଁ ଶୁଣୁ ଶୁଣୁ କୁଆଡେ ପଳେଇଲାଣି ।
(ଡାକ୍ତର ଆସିଲେ)

ଡାଃ —ଦେହ କେମିତି ଅଛି ମା ।
ରୁକ —ଭିତରକୁ ଆସନ୍ତୁ !
ଡାଃ —କିଛି ଦର୍କାର ନାହିଁ ମା···ମୁଁ ଏଠି ବସୁଚି । ନାଡ଼ିଟା ଟିକିଏ ଦେଖି···ହୁଁ, ଜର ତ ବେଶି ନାହିଁ ।
ନେତ —କୁହ ମା ପାଟି ପିତା ଲାଗୁଚି କି ନାହିଁ ?
ଡାଃ —କିଏ ? ଓ ତମେ···ଯେ କଥା ଆଜି କହିବାକୁ ଅଛି । ମୁଁ ସବୁ ବୁଝି ସାରିଲିଣି ! ଏଇ ଔଷଧ ରଖ ମା' ଛଟା ପୁଡ଼ିଆ···ଛଟା ପିଲ୍ ସେବନ ବିଧି ଏଇ କାଗଜରେ ଲେଖାଅଛି । ଏଇଥିରେ ଜର ଏକାବେଳକେ ଛାଡ଼ି ଯିବ । ଦେଖିବ ନାହିଁ ମା··· ଏଇ ଛଅ ଘାନରେ ସବୁ ଠିକ୍ ହୋଇ ଯିବ । ପଥ୍ୟ-ବିଧି ଯାହା କହି ଯାଇଥିଲି ସେଇଆ ଚଳିବ ।

ନେତ —ଏଇ ଛ ଘାଟରେ କଣ୍ଟେ ଗୁଡ଼ବଡି ?

ଡାଃ —କାଲି ଏତେବେଳକୁ ଦେଖିବ ମା, ମୋ କଥା ସତ କି ମିଛ ? ହଜ୍ ମା—ମୁଁ ଏଥର ଆସୁଛି...ଏ...ରାମ କୁଆଡେ଼ ଗଲାକି ? ତାକୁ ତ କାଇଁ ଦେଖୁ ନାହିଁ ।

ରୁକ —କାହିଁ ତ ନାହିଁ ଏଠି ? କ'ଣ କାମ ଥିଲା ?

ଡାଃ —ନାଇ ମା--ମତେ ଡାକିବାକୁ ଯାଇଥିଲା ନା ! ଫେରିଲାଣି କି ନାଇଁ ପଚାରୁଥିଲି ।

ନେତ —ଫେରିଲେଣି—ବାରପଟେ ଅଛନ୍ତି—ଡାକି ଆଣିବି ?

ଡାଃ —ଆହା—ହାଁ...ପିଲା ଲୋକ—ଖେଳୁଥିବ ! କାଇଁକି ମିଛରେ ତାକୁ ଡାକିବ ।

ରୁକ —ନେତ ! ପାନ ଆଣ । (ନେତ ଗୃହାନ୍ତରକୁ)

ଡାଃ —ପାନ ଆଜି କ'ଣ ହେବ ମା ! ତମକୁ ମନେ ନ ଗୁଡ଼ିଲେ ମୋ ପାନ ଖାଇବା ଇଚ୍ଛା ନେ ଇଯିବ ।

ରୁକ —କାଇଁକି ?

ଡାଃ —ରାମ କଥା ମୁଁ କହୁଥିଲି ନା ?

ରୁକ —ହୁଁ କ'ଣ କରିବି ନେ ?

ଡାଃ —କିଛି କରି ନାହିଁ ଯେ...ନେହେଲେ...

ରୁକ —କୁହନ୍ତୁ କ'ଣ ହୋଇଚି ।

ଡାଃ —ଆଜି ଓ କାଲି-ଏଇ ଦି'ଟି ଦିନ ସମସ୍ତ ମନେ ଦେଇଚି ! ଏଇ ଦି ଦିନରେ ଯଦି ତମ ଜରର ନ ଛାଡ଼େ ତେବେ । କହୁଚି...ମେ.ର ଏଇ ଡାକ୍ତ ଦଶା......

ରୁକ —ତା ପାଇଁ ମୁଁ ଦୋଷ ମାଗି ନେଉଚି ଡାଃ ବାବୁ, ସେଇଟା ସେମିତିକା ପିଲାଟାଏ...ଆପଣ ତା କଥା ଧରିବେ ନାଇଁ ।

ଡାଃ —ବୁଝିଲ ମା—ଖାଣ୍ଟି ଔଷଧ ଦେଇଗଲି-ପକ୍କା ବ୍ୟବସ୍ଥା କରି ଯାଉଛି-ଏଥିରେ କାଣିଗୁଏ ଭେଜାଲ ନାହିଁ । ହେଲେମା···ମୁଁ ତ ଅଶ୍ୱିନୀ କୁମାର ନୁହେଁ । ଡାଃ ହୋଇଛି ରୋଗୀଙ୍କ ପ୍ରାଣ ବଞ୍ଚାଇବା ମୋର ଧର୍ମ । କନ୍ତୁ ନିଜ ପ୍ରାଣଟା ଯଦି ଏମିତି ବିନା ରୋଗ-ବିନା ଚିକିତ୍ସାରେ ଚାଲି ଯାଏ······

ରୁକ —ସେ ଆସୁ ଆଜି—ମୁଁ ବୁଝିବି ତା କଥା ।

ଡାଃ —ପଞ୍ଚାଏ ବାଉଣ୍ଡି ପିଲଙ୍କୁ ମିଳାଇ ଗୋଟାଏ ମେଣ୍ଟ ବାନ୍ଧିଛି···ତାକୁ କଣ କହିବି କହିଲ ମା ? ······ ଅତି କଷ୍ଟରେ ଆଜି ଘରି ପଛକ୍‌ରେ ଶହେଟି କଲମି ଗଛ ଆଣି ପୋତାଇଛି···ମତେ ଧମକ ଦେଇଛି କାଲି ଏତେ ବେଳକୁ ତମକୁ ଜର ନ ଛାଡ଼ିଲେ ସେ ସବୁକୁ ଟାଙ୍ଗିଆରେ ହାଣି ଶୁଆଇ ଦେବ······

ରୁକ —ମୁଁ ଜାଣେ ସେ ଟୋକାଟା ଦିନେ ନାଁ ପକାଇ ଜେଲ ଯିବ, ଖାଲି ତାରି ପାଇଁ ମୁଁ ଭାବି ଭାବି ମଲିଣି ।

ଡାଃ —ହଉ ମା, ମୁଁ ଯାଉଛି-କାଲି ସକାଳୁ ପୁଣି ଆସି ଦେଖି ଯିବି ।

ରୁକ —ନେତ !···

ନେତ —ଆଜ୍ଞା—ଆଜ୍ଞା···

(ନେତ ଆସି ପାନ ଦେଲା ସଙ୍ଗେ ସଙ୍ଗେ ଶ୍ୟାମ ମିଶ୍ର ମଧ୍ୟ ଆସିଲେ । )

ଶ୍ୟାମ —ଏଇତ ଡାଃ ବାବୁ ! ଆପଣଙ୍କ କାମ ଶେଷ ହେଲଣି ?

ଡାଃ —ସବୁ ଶେଷ ହେଲଣି ଆଜ୍ଞା-ଖାଣ୍ଟି ଔଷଧ ପକ୍କା ବ୍ୟବସ୍ଥା !

ଶ୍ୟାମ —ଧନ୍ୟବାଦ ! ଏଇ ଆପଣଙ୍କର···ଭିଜିଟ୍ !

(ଟଙ୍କା ଦେଲେ)

ଡାଃ —ଚୁରି ଟଙ୍କା !!

ଶ୍ୟାମ —ହଁ, ଚୁରି ଟଙ୍କା ତ !

ଡାଃ —କି କଥା କହୁଛନ୍ତି ଆପଣ ! ମୁଁ ଚୁରି ଟଙ୍କା ଦୁଇଟି ନେବ । ଭିଜିଟି ମୋର ସେଇ ଟଙ୍କାଟିଏ ! ସେଥିରୁ ଛଦାମ ବେଶି ନବା ମୋ ଜାତକରେ ସମ୍ଭବ ନାହିଁ ।··· ଚାଲିଲି ଶ୍ୟାମ ବାବୁ···ଟଙ୍କା ତ ଦି ଦିନର ସାଥୀ— ମଣିଷ ଚିଣିଆ କରୁ ଚାର ଦିନକୁ ।···ହଉ ମୁଁ ଆସୁଛି ଆଜ୍ଞା···ପୁଣି କାଲି ଆସି ଦେଖି ଯିବି ସେ·········

( ଚାଲିଗଲେ । )

ଶ୍ୟାମ —ଦେଖିଲ ତ !

ରୁକ —ଦେଖିବି କ'ଣ ? ଚୁରି ଟଙ୍କା ଛୁଇଁ ଆଠଟଙ୍କା ଭିଜିଟି ଦେଉଥିଲେ ଏମିତି ଭଲ ମଣିଷ ପାଉଥାନ୍ତ ନା ? ହେଲେ ତମ ଗୁଣମଣିଙ୍କ ଖବର ଶୁଣିଚ ! କି ଧମକ ସେ ଡାଃ ବାବୁଙ୍କୁ ଦେଉଚି ?

ଶ୍ୟାମ —ସେ କଥା ମତେ କାହିଁକି ଶୁଣଉଚ ଯେ ? ସମସ୍ତେ କହନ୍ତି ବମ ତମର ଦଅଳ ନୁହେଁ ପୁଅ, ମୁଁ ତା କଥା କହୁଁ ଜାଣେ ନା ବୁଝେ । ତମ ପାଇଁ ସେ ଡାକ୍ତରକୁ ଧମକ ଦେଉଚି, ସେ କଥା ସେ ଜାଣେ ତମେ ଜାଣ··· ମୁଁ ସେଥିରେ ନାହିଁ । (ଚାଲିଗଲେ)

ରୁକ —ନେତ, ଦେଖିଲୁ ! ସେ ମୋଟା ମୁହାଁ କୁଆଡ଼େ ଗଲା !

(ଭିତରକୁ ଗଲେ)

—* * *—

## ତୃତୀୟ ଦୃଶ୍ୟ

(ଶ୍ୟାମ ମିଶ୍ରଙ୍କ ଘର ଭିତର ଅଗଣା ରାମ ଆସିଲା, ହାତରେ ଗୋଟାଏ ଭଙ୍ଗା ବେଲ ଓ ଖୁଲାଏ କାଠି)

ରାମ —ନେତ ! (ନେତ ଆସିଲା)

ନେତ —କ'ଣ ?

ରାମ —ନୂଆ ବୋଉ କାହାନ୍ତି ?

ନେତ —ଗାଧୋଇ ଯାଇଛନ୍ତି ।

ରାମ —ଆଜି ତ ଜର ହେଇ ନାହିଁ ।

ନେତ —ସେଇ ଛ ପାନ ଔଷଧରେ ସବୁ ଜର ଗୁଡ଼ାକ ଗୁହରିଦାନ ହେଲା ଆଉ ଜର ନାହିଁ ।

ରାମ —ହଉ... । ଗୋବିନ୍ଦ କାହିଁ ଗଲା ? (ଡାକିଲା ଗୋବିନ୍ଦ)

ଗୋବିନ୍ଦ —(ଭିତରୁ) ଯାଉଚି କକେଇ ।

(ହାତରେ ପିଞ୍ଜରାଟା ଧରି ଆସିଲା)

ରାମ —ହଇରେ ତୁ ହାତରେ ପିଞ୍ଜରାଟା ଧରି କାହିଁକି ସବୁବେଳେ ବୁଲୁଚୁ ?

ଗୋବିନ୍ଦ —ଚଢ଼େଇ ଧରି ପିଞ୍ଜରାରେ ପୂରାଇବା ପରା ! ଅଠା କାଠି ହେଲାଣି ?

ରାମ —କୋଉଠି ହେଲାଣି ? ଅଠା କାଠି ହେବ... କାଠି ବସେଇବା...କାଠିରେ ଚଢ଼େଇ ପଡ଼ିବେ... ତେବେ ଯାଇ ସିନା ପିଞ୍ଜରା...ଯା ପିଞ୍ଜରାଟା ସେଠି ଟାଙ୍ଗିଦେ (ଗୋବିନ୍ଦ ପିଞ୍ଜରା ଟାଙ୍ଗି ଦେଲା)

ଗୋବିନ୍ଦ —ଅଠା କାହିଁ କକେଇ ?

ରାମ —ଏଇ ଡେଲିଅଠା,ଭୋଳାକୁ ବରଅଠାପାଇଁ ପଠେଇଛି ।
ଏଇରେ, ଭୋଳା ଆସିଲାଣି ।
( ଭୋଳା ଆସିଲା, ସେ ତାଙ୍କର ଚାକର, ହାତରେ ଗୋଟାଏ ଅଠା ଧରିଛି )

ରାମ —ଆଣିଲୁ ।

ଭୋଳା —ହଁ

ରାମ —ଦେଖି, (ଭୋଳା ରଖିଲା) ଓ ଖୁବ୍ ହବ, ଭୋଳା; ରାନ୍ଧିବା କେଉଁଠି ?

ଭୋଳା —ଏଇଠି ।

ରାମ —ଏ’ ଅଗଣାରେ ଚୁଲି କାଇଁ ?

ଗୋବନ୍ଧ —କ’ଣ ରନ୍ଧା ହେବ କକେଇ ?

ରାମ —ଅଠା

ଗୋବନ୍ଧ —କଏ ଖାଇବ ? ଚନ୍ଦ୍ରଛି ।

ରାମ —ଦୂର୍ ବୋକା, ଅଠା ରନ୍ଧା ହେଲେ କାଠିରେ ଲାଗିବ । ଭୋଳା, ଖଳା ବାଉଁଶ ଚାଲ ।

ଗୋବନ୍ଧ —ଆମ ବୋଷେଇ ଘରେ ବୋଉକୁ କହିବା ରାନ୍ଧିଦେବ ।

ରାମ —ଚୁପ୍ । ଭୋଳା, ଗୋଟାଏ ହାଣ୍ଡି ଆଣ

ଭୋଳା —ହାଣ୍ଡି କାଇଁ ?

ରାମ —ନେତ-ହେ ନେତ ! (ନେତ ଆସିଲା)
ଗୋଟାଏ ଭଙ୍ଗା ହାଣ୍ଡି ଦେଲୁ ।

ନେତ —ହାଣ୍ଡି କ’ଣ ହେବ ?

ରାମ —ତୁ ଦେ’ ନା !

ଗୋବନ୍ଧ—ଆମର ଅଠା ରନ୍ଧା ହେବ ।

(ନେତ ଏମାନଙ୍କ ପଛଆଡ଼େ ମୁହଁ ମୋଡ଼ି ଦେଇ ଚାଲିଗଲା)

ଶ୍ୟାମ —ଭୋଲା--ତୁ ହାଣ୍ଡି ଆଉ ଦି'ଖଣ୍ଡ କାଠ ଆଣି-ଆ ଆମେ ଯାଉଚୁ । ଆ' ଗୋବର୍ଦ୍ଧନ,

ଗୋବର୍ଦ୍ଧନ—ଚାଲ୍ (ଅଠା ଓ କାଠ ନେଇ ଦୁହେଁ ଚାଲିଗଲେ)

ଭୋଲା —ଗୋଟାଏ ଗ୍ଳେଟିଆ ହାଣ୍ଡି ଦେଖି ଆଣିଦେ ମୋତେ !
(ନେତ ଘର ଭିତରୁ ହାଣ୍ଡି ଆଣି ଭୋଲାକୁ ଦେଲା)
ଦେଖୁଚୁଟିରେ ଭୋଲା—ଇଏ କୁଆଡ଼େ ବ୍ରାହ୍ମଣ ଘର ପିଲା—ଅଠାକାଠିଆ ବସେଇ ଚଢ଼େଇ ଧରିବାକୁ ବାହାରିଲେଣି ।

ଭୋଲା —ଚୁଉ୍ ନାମ—ପିଲା ନଷ୍ଟ-ବଳେ ବୁଦ୍ଧି ଫେରିଯିବ
(ରୁକ୍ମଣୀ ଆସି ଓଦାଲୁଗା ନେତ ହାତକୁ ବଢ଼ାଇ ଦେଲେ )

ରୁକ୍ମଣୀ—କାହା ବୁଦ୍ଧି ଫେରିବରେ ଭୋଲା ?
······ଇଏ କ'ଣ ? ହାଣ୍ଡିଟା କୁଆଡ଼େ ନଉଚୁ ?

ଭୋଲା —ରନ୍ଧା ହେବ ।

ରୁକ୍ମଣୀ —କ'ଣ ରନ୍ଧା ହବ ? କିଏ ରାନ୍ଧିବ ?

ଭୋଲା —ଝଚୁଉର ।

ରୁକ୍ମଣୀ —କଟେଇ କୁହନ୍ତୁ······କ'ଣ ରନ୍ଧା ହବ ?

ନେତ —ତୋ ଚାଣ୍ଠିରେ ମୁଦ ଦିଆ ହେଉଛି କରେ ! ଭୋଲା ···କହନ୍ତୁ···ସାନବାବୁ ଅଠା ବନ୍ଧି ଅଠାକାଠିଆ ବସେଇବେ !

ରୁକ୍ —ଶ୍ୟାମ ଏ ବରାଦ କରିଚି ।

ଭୋଲା —ହଁ ।

ରୁକ —ରାମ କାହିଁ ?
ଭୋଲା —ସେ ବାହାରେ ଅଛନ୍ତି ।
ରୁକ — ହାଣ୍ଡି ଟା ସେଠି ରଖିଦେଇଯା ତାକୁ ଡାକି ଆଣିବୁ
......! କରେ ପାଉନୁ···ଭୁକ ହୋଇ ଠିଆ
ହେଲୁ କାହିଁକି···
ଭୋଲା —କରେଇ ପୁରୁଷ ନୁହେଁ କେଉଁ ଶରଧାରେ···
ରୁକ —ମୁଁ ଯାହା କହୁଛି କର—ଯା ତାକୁ ଡାକି ଆଣ୍
(ଭୋଲା ହାଣ୍ଡି ରଖିଦେଇ ଗଲା)
ନେତ ! ବାବୁ କଚେରିକି ଗଲେଣି ?
ନେତ —ହଁ ।
ରୁକ —ରାମର ଲୁଗା ଗାମୁଛା ବାହାର କରି ଦେ···
ସେ ଗା ଧୋଇ ଯିବ । ଗୋବନ୍ଦ କାହିଁ ଗଲା ?
ନେତ —ଖଳା ବାଡ଼ିରେ ଅଛନ୍ତି ସବୁ···ଯାନ ବାବୁଙ୍କ ପାଖରେ ।
(ଲୁଗା ଗାମୁଛା ଆଣି ପିଣ୍ଡାରେ ରଖିଲା)
ରୁକ — ଗୋବନ୍ଦ ଆଜି ଗାଧୋଇବ ନାହିଁ ?···କାଲି ରାତିରେ
ସେ କାହିଁକି ଖୁଁ ଖୁଁ ହେଉ ଥିଲା···
(ରାମ ଓ ଗୋବନ୍ଦ ଦୁହେଁ ଆସିଲେ)
ରାମ —କ'ଣ ନୂଆ ବୋଉ !
ରୁକ —ବାହାରେ କ'ଣ କରୁଥିଲୁ ?
ଗୋବନ୍ଦ —ଅଠାକାଠି ତିଆରି କରୁଥିଲୁ ଚଢ଼େଇ—
ଚଢ଼େଇ ଧରା ହେବ—ବାଘରଙ୍ଗୀ ଚଢ଼େଇ ।
ରାମ —ବାଘରଙ୍ଗୀ କ'ଣରେ ! —ବୁଢ଼ୀମାଙ୍କଡ଼ି ।
ରୁକ —କେତେବେଳ ଘର କାକୁଡ଼ି ମଞ୍ଜା···କିଏ କାଟିଲା ?
ରାମ —କେତେବେଳ ଘର କାକୁଡ଼ି ମଞ୍ଜା···କିଏ କାଟିଲା ?

ରଜ — -ତୁ କାଟିନୁ ?

ରାମ —ସିଏ ଦେଖିଚନ୍ତି ମୁଁ କାଟିଚି ।

ରଜକ୍ଷ୍ଣୀ — ସିଏ ନ ଦେଖନ୍ତୁ, ମୁଁ ଦେଖିଛି । କେତେ କଷ୍ଟରେ ପ୍ରାଣ ଦେଇ ଏ ଖରାଦିନେ ସେ ଗଛ ବଢ଼େଇ ଥିଲେ ତୁ ମନ୍ଦାଟା ପାଜି କାଟିଦେଲୁ ?

ରାମ —ସେ ବୁଢି କାହିଁକି ମତେ ଗାଳିଦେଲା — ସର୍ମିଲା ।

ରଜ —ତୁ ତା କାକୁଡ଼ି ଚୋରି କରିବୁ, ସିଏ କହିବ ନାହିଁ ।

ରାମ — ଚୋର,କି ଚୋର ! ଦିନ ଦି ପହରେ ଗୋଟାଏ କାକୁଡ଼ି କଷି ଛିଡ଼େଇ ଦେଲେ ଚୋର ହୋଇଗଲି ?

ରଜ —ନାହିଁ ତୋର କାହିଁକି ହେବ ? ପଚାର, ପଚାର, ସେଇ ବୁଢ଼ିଆ ବକଟେ ଗୋବନ୍ଦକୁ ପଚାର । ସେ କହିବ ତୋର କାହାକୁ କହନ୍ତି । ···ଦେମାସ୍ ତା କାକୁଡ଼ି ଖାଇଲୁ ତା ଗଛକୁ ପୁଣି କାଟିଲୁ । ଠିଆ ହ ଏକ ଗୋଡ଼ିଆ ହୋଇ ଠିଆ ହ । ଆସି ତେର ତଉପ ତେଣ୍ଡେ ପିଲା ହେଲା କୋଉଦିନ ଏଇଟାର ବୁଦ୍ଧି ଅକଲ ହବ କେଜାଣି ?

ଗୋବନ୍ଦ—ବୋଉ, କଟକେଇ ଏକ ଗୋଡ଼କିଆ ଠିଆ ହେବ ?

ରୁକ — ହଁ (ଘର ଭିତରକୁ ଚାଲିଗଲେ)

ଗୋବନ୍ଦ—କଟକେଇ, ଠିଆ ହଉନ ? ହ କଟକଇ ଉରୁଚ କାହିଁକି ? ଆସୁ ନାହିଁ । ମୁଁ ବତେଇ ଦଉଚି । ଏ ପାଦଟାକୁ ନେଇ ସେ ଆଣ୍ଠୁରେ ଭିଡ଼ଦିଅ ।··· ଏଇ ଏମିତି ।

ରାମ —ଚୂପ୍ ବଦମାସ୍ । ( ଏକ ଗୋଡ଼କିଆ ଠିଆହେଲା ) କାକୁଡ଼ି ଆଣି କାହାକୁ ଦେଇଥିଲି ?

ଗୋବନ୍ଦ—ମତେ ଦେଇଥିଲ । ସତରେ କକେଇ ମୁଁ କାକୁଡ଼ି
ଝାଉଲି । ତେମେ ଏକ ଗୋଡ଼କଥା ଠିଆ ହେଲ ।

ରାମ —ତୋର କ'ଣ ଗଲା ?

ଗୋବନ୍ଦ—ନାଇଁ ତମ ପାଇଁ ମୁଁ ଠିଆହେବ କକେଇ ?

ରାମ —ହେଇ ପାରିବୁ ଯେ ?

ଗୋବନ୍ଦ —ପାରିବ ନାଇଁ । ଏଇ ଦେଖ ।

(ଗୋବନ୍ଦ ଠିଆ ହେଲା କିନ୍ତୁ ଟଳୁଥାଏ)

ରାମ —( ହସି ହସି ) ହେଇ ପଡ଼ିଲା···ହେଇ ପଡ଼ିଲା···

( ରୁକ୍ମଣୀ ଆସି ଏମାନଙ୍କୁ ଦେଖି ହସି ଉଠିଲେ)

ରୁକ୍ —କଣରେ···ଇଏ କ'ଣ ?

ରାମ —ମୁଁ ତାକୁ କହୁନ ନୂଆବୌ । ସିଏ ତା ମନକୁ ଠିଆ ହେଉଛ ।

ରୁକ୍ —(ହଉ ହଉ ଖୁବ୍ ହେଲଣି— ତୁ ବ ଯା—ଆଉ କେବେ ଏମିତ୍ତ କରିବୁ ନାଇଁ, ଲୁଗା ଗାମୁଛା ନେଇ ଗାଧେଇ ଯା । (ରାମ ସେମିତ ଠିଆ ହୋଇଥାଏ) କରେ, ସିତାକୁ କହୁଲ ପରା ··ଓ ରାଗ ହେଲ ଗଲାଣି ବାବୁଙ୍କର—ସବୁଦିନେ ଏଇକଥା ମନେ ରହନ୍ତା କ । ···କରେ ବେଳ ହୋଇ ଗଲାଣି । ଗାଧୋଇ ଖାଇ ଇସ୍କୁଲକୁ ଯିବୁଟି ?······

( ରାମ ଦୌଡ଼କରି ଦେଉ୍ ପଳେଇଲା )

ଦେଖୁଚ ନେତ, ଯା ବୋଲି କହୁଲତ ଏକ ବେଳକେ ଡ଼ଆଁ ମାରି ଛୁ । ··ଦେଖିଲୁ ପୁଣି କୁଆଡେ଼ ଗଲା— ମତେ କହଲଇ ଯୋଡ଼େଇ ମାରିବ ପରା ସେ ।

(ନେତ ବାହାରକୁ ଗୁହିଁ)

ନେତ —ଦେଖୁତ ମା—ସେ ଦଳ ଗାଡ଼ିଆରେ ଯାଇଁ ଗାଧୋଇଲେଣି ।

ରୁକ —ଦଳ ଗାଡ଼ିଆରେ ଗାଧୋଇଛୁ । ଆଲୋ ଯା ତାକୁ ମନା କର ! ପାଣି ଧରି ସର୍ଦ୍ଦି ଜର କଲୁ ବାଙ୍କ ରହିବ ନାହିଁ ।

ନେତ —ମୋ କଥା କ'ଣ ସେ ମାନବେ ?

ରୁକ —ମୁଁ ମରିଯାନ୍ତି ହେଲେ···ଏଇଟା ପାଇଁ ଏତେ ହଟହଟା ହୁଅନ୍ତି ନାହିଁ ।
(ରାମର ଲୁଗା ଓ ଗାମୁଛା ନେଇ ବାହାରି ଗଲେ)
[ସେଇଦିନ ରାତି ପ୍ରଥମ ପ୍ରହରର ଘଟଣା—ରୁକ୍ମଣୀ ହାତରେ ଭାତଥାଳ ଧରି ବସିଛନ୍ତି]

ରୁକ —ନେତ, ରାମକୁ ଡାକ ଦେ—ଖାଇବ ।
(ରାମ ଆସିଲା) ଏଇତ ଆସିଲଣି ।

ରାମ —ଦିଅ ନୂଆ ବୋଉ—ମତେ ଏଇ ଅଗଣାରେ ଦିଅ ।

ରୁକ —ନା, ସେ ଘରେ ତୋ ଭାଇନା ଖାଉଛନ୍ତି··· ତୁ ସେଇଠିକି ଚାଲ ।

ରାମ —ନାଇଁ--ନାଇଁ—ସକାଳେ ତମେ କହିଥିଲ ଏବେଳା ମତେ ଖୁଆଇ ଦବାକୁ—ମୁଁ ମୋଟେ ସେଠିକି ଯିବ ନାହିଁ—ଏଇଠି ମତେ ଖୁଆଇ ଦିଅ ।

ରୁକ —ଅବୁଝା ହ-ନାଇଁ ରାମ—ମୋର ତେଣେ କେତେ କାମ ?

ନେତ —ଯାଉନା ଯାନବାବୁ·····ଭାଇନାଙ୍କ ପାଖରେ ବସି ଖାଇବ ।

ରାମ —ଚୁପ୍ ତୁ ପାଟି କରନା ।

ଗୁଜ —କରେ ବାଟ ଜଗି ଠିଆ ହେଲୁ କାହିଁକି । ଗୃହ୍ଲ ।

ରାମ —ନାଇଁ ନୂଆ ବୌ ତମେ ମତେ ଏଇଠି ଝୁଆଇ ଦିଅ—ନଇଲେ କହ୍ନ ଦଉଚ ଏକା - ଭାତ ହାଣ୍ଡିରେ ଧୂଳି ଭର୍ତ୍ତି କରଦେବ ।

ଗୁଜ —ଦେଦମାସ, ଦେଲୁ କେମିତି ଧୂଳି ଭର୍ତ୍ତିକର, ମୁଁ ଦେଖେ···

ରାମ —(ଅଭିମାନ କରି) ହୁଁ, ଭାତ ଏକା ତମୁକୁ ଦେଖି ଅଛେ—ସକାଳ ବେଳା କହ୍ଲ ଏ ବେଳାକୁ ଖୁଆଇ ଦବ -ଏ ବେଳା ପୁଣି ଠକୁଚ ।

ଗୁଜ —ଅଚ୍ଛା ଏଡ଼ିକିଏ ହେଲଣି, ପର ହାତରେ ଖାଇବାକୁ ତୋତେ ଲଜ ମାଡ଼ୁନାଇଁ ।

ରାମ —ପର ! ପର କିଏ ? ତମେ ତ ଖୁଆଇ ଦବ ! ନଜ ନୂଆ ବୌ କ'ଣ ପର ହେଲଣି ?

ଗୁଜ —ତୋତେ ଅଉ ପାରି ହବ ନାହିଁ,
ନେତ—ସେ ଆସନଟା ଏଠେ ଦେ ! 
(ନେତ ଆସନ ପକାଇଲ—ରାମ ବସିଲ)
ହୁଁ, ଜାଣିଥା -ଆଜି ଏକା ଶେଷ ଆଉ କେବେ ମୋ ହାତରେ ଖାଇବାକୁ ଜିଦ ଧରିବୁ ନାଇଁ ।
(ଖୁଆଇ ଦେଲେ)

ରାମ —(ପାଟିରେ ହାତ ପୁରାଇ) ଜହୁ···ସନ୍ତୁଳା ନୁହେଁ— ମାଛ, ମାଛ···

ଗୁଜ —କହ୍ଲୁ ରାମ—କେବେ ତୋର ଏ ବୁଦ୍ଧି ଗୁଡ଼ିବୁ ତୁ । ଭଗବାନ କ'ଣ ତୋତେ ଭଲ ବୁଦ୍ଧି ଦେବେ ନାହିଁ । ଲୋକଙ୍କ କଥା ଯେ ମୁଁ ଆଉ ସହିପାରୁ ନାହିଁ ।

ରମ —ଲୋକ ! କଏ ସେ ଲୋକ ? କଏ ତମକୁ କ'ଣ କହୁଚ ଗୋଟି ଗୋଟି କରି ସମସ୍ତଙ୍କ ନାଁ ମନେଛ କୁହ ।

ରୁକ୍ନ —ବାସ୍ ! ଗୋଟି ଗୋଟି କରି ସମସ୍ତଙ୍କ ନାଁ ମୁଁ ତୋତେ ଏଠି କହିବ—ଆଜି କାଲି ସକାଳେ ତୁ ଗୋଟି ଗୋଟି କରି ସମସ୍ତଙ୍କ ଘରେ ନାଟ ଲଗେଇ ଦବୁ ! ଥାଉ ବାବା—ମୋର ଦର୍କାର ନାହିଁ ।
…ହଁ ତୁ ଶୁଣିଚୁ ରମ, ଆମ ଘରକୁ କଏ ଆସୁଚନ୍ତି ?

ରମ —କଏ ?

ରୁକ୍ନ —ମୋ' ବୋଉ !

ରମ —ତମ ବୋଉ--ତା ହେଲେ ବୁଢ଼ୀ ହେଇ ଯିବେଣିତ ?

ରୁକ୍ନ —ହଁ ଆଉ ମୋ ସାନ ଭଉଣୀ ।

ରମ —କ'ଣ ତା ନାଁ ।

ରୁକ୍ନ —ସୁସ୍ମା ।

ରମ —ସେ କେଡ଼୍ଡ଼ଟିଏ ?

ରୁକ୍ନ —ଛୋଟ୍ ତିନ ଚ୍ୟାରି ବରଷ ସାନ ।

ରମ —ଏଇଠି ରହିବେ ?

ରୁକ୍ନ —ହିଁ ।

ରମ —କାହିଁକି ? ତାଙ୍କର କଅଣ ଘର ନାଇଁ ?

ରୁକ୍ନ —ମୋ ମାମୁଁଙ୍କ ପାଖରେ ଥିଲେ । ମାମୁତ ମରିଗଲେ— ଆଉ ରହିବେ କେଉଁଠି ? ଏଇଠିକି ଆସୁଛନ୍ତି । କାଲି ଆସି ପହଞ୍ଚିବେ ।

ରମ —ଆସନ୍ତୁ ।

ରୁକ୍ନ —ଦେଖ, ତାଙ୍କ ପାଖରେ ତୁ ଯେମିତି ବଦମାସି ନ କରୁ ! କଅଣ କହୁଛୁ ।

ରାମ —ଓଃ ! ରାଗ ହେଲା ନୂଆ ବୌ ! ପାଣି ଦିଅ—ପାଣି···
(ପାଣି ପିଇସାରି) ଆଜ ଖାଇବ ନାହିଁ ।

ରୁକ —ଆଜ ତ ଗୁଣ୍ଡାଏ ଅଛି ।

ରାମ —ନା,—ଆଜ ଖାଇବ ନାହିଁ ।

ରୁକ —ହଉ ଯା—ମୁହଁ ଧୋଇ ଶୋଇବୁ ଯା,
(ରାମ ଚାଲିଗଲା)

ରୁକ —ଦେଖିଲୁ ନେତ, ଖୁଆଇ ନ ଦେଇଥିଲେ ଏଥର ଅଧା ବି ଖାଇ ନଥାନ୍ତା ।

ନେତ —ଖାଆନ୍ତେ ନାଇଁ, ନାଇଁ କରନ୍ତେ ।
(ବାସନ ଉଠେ ଓ ଉଠାଉ)

ପେଟ ପୋଡ଼ିଲେ କଏ ସମ୍ମାନ ରଖିବ ମ ? ତେମେ ଖାଲି ତାଙ୍କୁ ମୁହଁ ଦେଇ ଦେଇ ସେ ଏମିତି ମୁହଁଚଢ଼ା ହେଲେଣି । ଆସି ଏତେବଡ଼ ପୁଅ ହେଲେ—ଏବେନେ କ'ଣ ଗୋଟାଏ କୋଳରେ କାଖରେ ବସି ଖାଇବେ ବା ! ତମରି ଗେହ୍ଲାରୁ ଏସବୁ । ସାଇ ଭାଇରେ କଣ କହୁଚନ୍ତି । କ'ଣ ଶୁଣୁନ ? ସେ କଣ ଦୁଧଖିଆ ଛୁଆଟିଏ ହେଇଚନ୍ତି ? ଆସି ତେରବର୍ଷ ହେଲାଣିଟି ? (ରୁକ୍ମଣୀ ଚାଲି ଯାଉ ଯାଉ ଫେରିଲେ)

ରୁକ —ତାକୁ ତେର ହେଉ କ ତେଇଶି ହଉ ତମକୁ ସବୁ ଚିନ୍ତା ପଡ଼ିଚି କାଇଁକି ?

ନେତ —ଚିନ୍ତା କାହିଁକି ପଡ଼ିବ ମା ? ସିଏ ଦୁଷ୍ଟବୁଦ୍ଧି ଧଇଲାରୁ ବାଇରଲୋକ ବାଇକଥା କଉଚନ୍ତି—ଦୋଷ ତମକୁ ଦଉଚନ୍ତି ।

ରୁକ —ନେ,ତେ ଦୋଷ ଦୋଉଚନ୍ତି ! ମୁଁ ତାକୁ ଗେହ୍ଲା

କରୁଚ ବୋଲି ମୁଁ ଦୋଷୀ···ଆଜ ମୋ ଶାସନଟା
ଯାହାର ଆଖିରେ ପଡ଼ିଲା ନାହିଁ । ଦୁଷ୍ଟାମି କରୁଚ
ବୋଲି କି ଦଣ୍ଡ ସେ ମୋ'ଠୁ ନ ପାଉଚ ।
ସେତେବେଳକୁ ସମସ୍ତେ ଆଖି ବୁଜି ଦେଉଚ ।

ନେଳ —ତେବେ ଖାଲି ମୋ କଥା ଆଣ୍ଡୁଆ ବୁଝିବ ମା ।
ତମ କାନରେ କଣ କଥା ପଡ଼ୁନାହିଁ ? କାଲିପରା
ମ ଲବୌ ଓ'କ ବଜେଇ କହୁଥାଏ—ଗୋବଦ ବୌ
ମୁହଁ ଦେଇ ଦେଇ ବସିଥାଁ ଟାକୁ ସାଇଲ·····
ତାକୁ ମୋଟେ ଆକଟ କରୁନାହିଁ ।

ରୁକ —ମୁଁ ଦବୁ ଶୁଣିଚ—ଭଗବାନ ତାକୁ ଦୁଷ୍ଟ ବୁଦ୍ଧି
ଦେଇଛନ୍ତି ବୋଲି ବାର ଶ୍ରେଷ୍ଠ ଲୋକଙ୍କ କଥା ମୁଁ
ମୁହଁ ବୁଜି ଶୁଣିପାଉଛି । କିନ୍ତୁ ଛୁଅଟ'କୁ ମୁଁ ଟିକିଏ
ଅତତ କଲେ କି ସ୍ନେହ କଲେ ମୋତେ ଖଣ୍ଡା ଦେବେ
କାହିଁକି ? ସାଇ ଭଉଏ କଣ ସ୍ନେହକରନ୍ତି ମୁଁ ତାକୁ
ମାରି ହାଣି କଣ୍ଟରେ ଭସେଇ ଦେବ—ଏହି ଶାସନ—
ଏହି ଆକଟ ମୁଁ କରିବ ! ! (ଚାଲିଗଲେ)

ନେତ —(ମନକୁ ମନ) ନ କରେଲ ମା—ତା' ଅଟିରୁ ଲୁହ
ଟୋପାଏ ବୋହିଲେ ଯୁଆଙ୍କ ଦେହରୁ ରକତ
ଝିଲିକାଏ ଖସି ପଡ଼ିବ ! ଇଏ ପୁଣି ଆକଟ କରିବେ
···ଆକଟ !

—* * *—

## (ଚତୁର୍ଥ ଦୃଶ୍ୟ)

[ପୂର୍ବର ସେଇ ଅଗଣା । ଆଗରେ ଶ୍ୟାମ ଓ ପଛରୁ ପଛେ ଦଗମ୍ବରୀ ଓ ସୁଖୀ ଆସିଲେ]

ଶ୍ୟାମ —ଏତେ ଡେରି ହେଲ କାହିଁକି ? ମୁଁ କେତେବେଳୁ ନ ଯାଇଁ ଅପେକ୍ଷା କରି ବସିଛି ।

ଦଗମ୍ବରୀ — କୋଉ କାଳର ମଲା ବଳଦ ଝିଟା—ଗାଡ଼ି ଛାଡ଼ିବାରୁ ନାହାନ୍ତି, ଘଣ୍ଟାଏ ବାଟକୁ ପାଞ୍ଚ ଘଡ଼ି କଲେଣି !··· ଭଡ଼ା ପୁଣି ତିନି ଟଙ୍କା —

ଶ୍ୟାମ —ଭଡ଼ା ମୁଁ ଦେଇଦେଲିଣି !

(ରୁକ୍ମଣୀ ଭିତରୁ ଆସିଲେ)

ରୁକ —ବୋଉ ! (ପ୍ରଣାମ କଲେ)

ଦଗ —ମୋ' ମା'ଲେ···ମୋ' ମା'ଟା ! କେମିତି ଆସି ଏ ଘରେ ପାଦ ଦେଲେ ତୋ ମୁହଁ ଦେଖିବି ବୋଲି ମୋ ମନରେତ ପଡ଼ୁଥିଲା ନ ଥିବ । (କାନ୍ଦି କାନ୍ଦି ହୋଇ) ତୁ ଏମିତି କାହିଁକି ହୋଇଗଲୁଣି ବା ! ତୋ ଦେହକୁ କ'ଣ ଲାଗିଛି ଏ ମାଇଁ ?

ରୁକ — ତୁ ଆ ବୋଉ, ଭିତରକୁ ଆ !

ଦଗ —ଚାଲ ! (ସୁଖୀ ସାଥିରେ ରୁକ୍ମଣୀ ଭିତରକୁ ଗଲେ—ଦଗମ୍ବରୀ ଯାଉଁ ଯାଉଁ ଫେରି) ଆଲୋ ଗାଡ଼ିରୁ ଜିନିଷ ପତ୍ର ଗୁଡ଼ାକ ଅଣୁ ନାଇଁ କାହିଁକି ?

ଶ୍ୟାମ —ଭୋଳା ଜିନିଷ ପତ୍ର ଉଠାଇ ଆଣ !

ଭୋଳା —ନଜ୍ଞର ! (ଜିନିଷ ପତ୍ର ଧରି ଭୋଳା ଆସିଲା)

ଦଗ —ଇଏଲୋ ମୋ' ପେଟରେ କାଇଁ ?

ଭୋଳା —ଏକାଥରକେ ସବୁ ଆଣିଛ କେମିତି ! (ଚାଲିଗଲା)
ଶାମ —ଆପଣ ଚାଲନ୍ତୁ—ସେ ପଛରେ ଆସି ନେଇଯିବ ।
ଦଗ —(ବାହାରକୁ ଲକ୍ଷ୍ୟ ରଖି ନମ୍ର ସ୍ୱରରେ) ତୁ ଜାଣିନୁ ବାପ, ଆମ ସେଆଡ଼ୁକା ଗାଡ଼ିବାଲଗୁଡ଼ାକ ଛନ୍ଦ ଛ’ ପଦରେ ଗଣ୍ଠି କାଟିଦେବେ । (ଡାକନ୍ତିଲେ) ଆରେ ଭୋଳା !
ଭୋଳା —ଯାଉଛି ମା ! (ଆସିଲେ)
ଦଗ —ପେଟରାଟା ଆଣ—ଆଜି କ’ଣ ରହିବୁ ଦେଖ ।
(ରାମ ବାହାରୁ ଆସିଲା)
ଶାମ —(ରାମକୁ) ପ୍ରଣାମ କର !
ରାମ —ଏ······କିଏ ?
ଶାମ —ତୋ ମାଉସୀ ପରା ।
ରାମ —ଓ ନୂଆବୋଉଙ୍କ ବୋଉ ! (ପ୍ରଣାମ କଲା)
ଦଗ —ଇଏ ତୋର ସେଇ ଧାବଡ ଭାଇ ନା ମିଛି ?
ଶାମ —ହଁ !
ଦଗ —ଏଡ଼ୁକିଏ ଜୋଉଁଦିନ ହେଇ ଗଲଣି ?
ରାମ —କେଉଁଠିଏ ହେଲିଣି ?
ଦଗ —(ମୁହଁ ବୁଲେଇ ଦେଇ) ଭୋଳା ପେଟରା ଆଣିଲା ! ଇରେ ନେ ଗୋବ କୁଆଡ଼େ ଗଲା ବା···ଗୋବ ! (ଗୋବଦକୁ ଆସୁଥିବାର ଦେଖି ) ହେଇଟି ମୋ ରଜାଟା ଅଇଲାଣି (କାଖେଇ ନେଇ ଗେଲ କଲେ)
ଗୋବନ୍ଦ— ମୋ’ ପାଇଁ କ’ଣ ଅଣିଛ ଆଈ ? କିଛି ଅଣିନୁ ?
ଦଗ —ମୋ ରଜାଟା ପାଇଁ ପୁଣି ମୁଁ ଆଣିବିନି ?’ ଆରେ ଆରେ ଭୋଳା, କୁଆଡ଼େ ଗଲୁ ?(ଭୋଳା ପେଟରା ସହ ଆସିଲା)

ଶ୍ୟାମ — ଏଇ ଯେ ଆଣିଲଣି ; ଆପଣ ଆସନ୍ତୁ ।

(ଶାମ ଓ ହେଲା ଭିତରକୁ ଗଲେ)

ଗୋବିନ୍ଦ — କ'ଣ ଆଣିଚ ଆଣ୍ଟ ?

ଢଗ — (କାନରୁ ଫିଟେଇ ଦେଇ) ଏଇ ନେ—ନଣ୍ଡୁ ନେ—

ଗୋବିନ୍ଦ — କଟକେଇ ପେଇଁ ।

ଢଗ — ଉଁ—କଟକେଇ କ'ଣ ପିଲଟିଏ ହୋଇଚ ।

(ଭ୍ରମ ଖାଲି ସାମନାକୁ ଅନାଇଥାଏ)

ଗୋବିନ୍ଦ — କଟକେଇ ଖାଇବ ନାଇଁ ?

ଢଗ — କଟକେଇ ଖାଇଲେ ମୋ କୁଳ ଉଦ୍ଧାର କରିବ କି···
ଭୁ ଖା (ଖୁଆଇ ଦେଲା)

(ଭ୍ରମ କୋଳରେ ଢଳିଗଲା)

ଗୋବିନ୍ଦ — (ପାଟିରେ ପୁରାଇ) କଟକେଇ···କଟକେଇ···

ଢଗ — ଓଃ କଟକେଇ ହେଲା ଆପଣାର—ଆଚ୍ଛା—ଦେଖିବ,
···(ତମ ତମ ହୋଇ ଗଲାବେଳେ ପରଦା)

—✳ ✳ ✳—

# ପଞ୍ଚମ ଦୃଶ୍ୟ

[ଅଗଣା । ଗୋଟିଏ ପାଖରେ ଗୋଟିଏ ବାଉଁଶର ଗୋରଡା଼ ଭିତରେ ଗ୍ରେଟ ଓସ୍ତ ଗଛଟିଏ ଲଗା ହୋଇଚି, ରାମ ଗୋରଡା଼ ଗୁରପାଖରେ ବୁଲା ପରୀକ୍ଷା କରୁଚି]

ରାମ —ଭୋଳା—ହେ ଭୋଳା ·· !

ଭୋଳା —(ଆସିଲା) କ'ଣ ସାନବାବୁ ?

ରାମ —ଇଏ ହବ ନାଇଁ ।

ଭୋଳା —ହବ ନାଇଁ ?

ରାମ —ଏ ଗୋରଡା଼ରେ କାମ ଚଳିବ ନାଇଁ—ଗାଈ ମୁହଁ ବଢ଼େଇ ଖାଇଦେବ !

ଭୋଳା —ଗାଈ ଏ ଅଗଣା ଭିତରକୁ ଆସିବ କାଇଁକି ସାନବାବୁ ?

ରାମ —ଆସିବ ନାଇଁ ନାହିଁ କରିବ ! ତୁ ତ ନିଜେ ନେଇ ଆସିବୁ !

ଭୋଳା —ମୁଁ ଆଣିଲା ବେଳେ ମୁଁ ପରା ସାଙ୍ଗରେ ଥିବ ! ଗାଈ ଖାଇବ କେମିତି ?

ରାମ —ନାଇଁ—ନାଇଁ—ସେ କଥା ହବ ନାଇଁ ! ତୁ ଯା ବାଉଁଶ ଆଣ ଗୁରପାଖ ଯାକ ପୁରୁଣେ ଉଚାରେ ବାଡ଼ ପୋତିବା !

ଭୋଳା —ଏଇନେ ?

ରାମ —ହଁ, (ବଡ଼ ପାଟିରେ) ଗୋବର୍ଦ୍ଧନ ପାଣି ଆଣିଲୁ !

ଗୋବର୍ଦ୍ଧନ—(ଭିତରୁ) ନଉଚି କଟକଇ ।

ରାମ —(ଭୋଳାକୁ) ଯା—

ଭୋଳା —ବଳଦ ଖାଇ ବାହାନ୍ତୁ ସାନବାବୁ—ମୁଁ ବଳଦ ଖୁଆଇ ସାଂଗକୁ ଆସି ଯୋଡ଼ି ଦେଇଯିବି ।

ରାମ —ନିଶ୍ଚେ ଆସିବୁ !

ଭୋଳା —ହଁ (ଚୁଲିଗଲା, ଗୋବର୍ଦ୍ଧନ ଓ ସୁଖୀ ଗୋଟାଏ ପାଣି ଭର୍ତ୍ତି ବାଲଟି ଧରି ଆସିଲେ)

ରାମ — ଆଣିଲୁ !

ସୁଖୀ —ସିଏ ଏକା କରି ଆଣି ପାରୁ ନ ଥିଲା—ମୁଁ ଧରିଲାରୁ ଯାଇ ଆସିଲା ।

ରାମ —ହଁ—ତୁ ଭାରି ପହଲମାନ୍ । ସେ କୋଠା ବଟରେ ମରେ ଦେ ! ( ଗଛରେ ପାଣିଦିଆ ହେଲବେଳକୁ ଦିଗମ୍ବର ଆସିଲେ)

ଦିଗ —ସେଠି କଅଣ କରିବୁ କିରେ ରାମ ?

ରାମ —ତମକୁ ଦିଶୁ ନ ଇଁକି ! ଓସ୍ତଗଛ ଲଗଉଚି ପରା !

ଦିଗ —ସୁଖି, ଆର ଖଞ୍ଜ କୁ ଯା ! (ସୁଖୀ ଚୁଲିଗଲା) ଗୋବ···

ଗୋବର୍ଦ୍ଧନ —ମୁଁ କକେଇ ପାଖରେ ରହିବି ।

ଦିଗ —ହଇରେ ତୁ ଏଠି ଓସ୍ତଗଛ ଲଗଉଚୁ !

ରାମ —ହଁ ଆମ ସାର୍ କହିଛନ୍ତି ଓସ୍ତଗଛର ଗୁରି ଭାରି ଉପକାରୀ । ଗଛ ବଡ଼ ହେଇ ଯାଉ ଦେଖିବ ଭାରି ବଢ଼ିଆ ଗୁରି ହବ ।

ଦିଗ —ହଇରେ, ଏଇ କ'ଣ ଅଲକ୍ଷଣା କାମ ତୁ କରୁଚୁ ? ଅଗଣା ମଝିରେ ଓସ୍ତଗଛ ! ମାରିଲେ—ଏ ସୃଷ୍ଟି ବ୍ରହ୍ମାଣ୍ଡରେ ଏକଥା କୋଉଠି ଶୁଣା ନାହିଁ । ସେ ଗଛ ଉପାଡ଼ୁଚୁ ନା ?

ରମ —ଘଘା ମଉକ ତ । ଏତେ କଷ୍ଟରେ ଗଛ ଲଗେଇଚ
କଅଣ ଉପାଡ଼ିବା ପାଇଁ ··ଗୋବନ୍ଦ ଆଉ ପାଣିଦେ ।

ଦଗ —ସେ କ'ଣ ଶୁଣିବ ମୋ କଥା । (ଡାକଲେ) ରୁକ···
ରୁକ···ଲେ ରୁକ···ରୁକ ଆଇଲୁ ଏଣିକ ।
(ରୁକ୍ମଣୀ ଆସିଲେ ସାଥୀରେ ନେତ)

ରୁକ —ମତେ ଡ଼ାକୁଚୁ ବୋଉ ।

ଦଗ —ଦେଖ ରୁକ ଟୋ ଗୁଣମଣୀ ଦଅରର କୀର୍ତ୍ତି ଦେଖ ।
ଅଗଣା ମଝିରେ ଓସ୍ତଗଛ ଲଗା ହଉଚ ?

ରୁକ —ସେ କ'ଣ ହଉଚ ରାମ ?

ରାମ —ଓସ୍ତଗଛ ଲଗା ହଉଚ ନୂଆ ବୋଉ···ରୁଇ ହବ ।
( ବଡ଼ ପାଟିରେ ) ଶୋଳା, ତୋ କାମ ସଇଲ ।
(ସେ ଓ ଗୋବନ୍ଦ ଚୁଲଗଲେ)

ରୁକ —(ହସି) ପାଗଳାଟା···ଚୁଲ ଯାଉଥିଲେ ।

ଦଗ —ତୁ ହସି ଦେଇ ଚାଲ ଯାଉଚୁ କ'ଣ ବା ?

ରୁକ —ତୁ ଥପୁ ଧର ବୋଉ—ସେ ଗଛ କ'ଣ ବଞ୍ଚିବ ?
ଦନ ଦୁଇଟାରେ ଶୁଖି ମରଯିବ ।

ଦଗ —ଏତେ ସିଦ୍ଧି ହେଇ ଗଛ ଲଗା ହଉଚ···ବଞ୍ଚିବ
ନାଇଁ ! ! ତୁ ସେଇଟା ଓପାଡ଼ ଦେ ।

ରୁକ —ଏ ରାଜ୍ୟରେ ରହିବା କଥା କହୁନୁ ବୋଉ ! ସେ
କମିଡ଼କା ପିଲ—ଗଛ ଓପାଡ଼ ଦେଲେ ଆଉ ରକ୍ଷା
ଅଛି ।

ଦଗ —କାଇଁକ ? ମଲ୍ ଏ ଘରଦ୍ୱାର କଅଣ ଏକା ତାଆର ।
ତୁ କେହି ନୋହୁଁ । ମୋ ଶାଘ ଗୋବନ୍ଦ କେଇ
ନୁହନ୍ତ । ଅଗଣା ମଝିରେ ଆଣି ଓସ୍ତଗଚ ଲଗେଇବ ।

ଦୁନିଆ ଯାକର କା'ଙ୍କ ଶାଗୁଣା ଚିଲ ଆସି ବଥା ବାନ୍ଧି ରହିବେ···ହାଡ଼ କଣ୍ଟା ଆସି ଘର ଦୁଆରେ ପଡ଼ିବ ! ମୁଁ ତ ଏଠି ରହି ପାରିବ ନାହିଁ ।

ରୂନୁ —ତୁ ବୁଝି ପାରୁନୁ ବୋଉ······

ଦିଗ —ନା—ମୁଁ ପାରୁ ନାହିଁ । ତାକୁ ତମର ଏତେ ଡ଼ର କାହିଁକି ? ସାବତ ମା ପେଟର ଝିଅର—ତାକୁ କାହିଁକି ମୁହଁ ଦେବ ? ମୋ ଘର ଏ ବୋ'ଇଥିଲେ ଦିନ ଦି'ପହରେ ମୁଁ ତା ମୁହଁରେ ନିଆଁ ଲଗେଇ ଦିଅନ୍ତି ।

ରୂନୁ —ବୋଉ—ସେ ପିଲାଟା ଏ ବୋଉ, ତାଆର ବୁଦ୍ଧି ଥିଲେ ସେ ଦୁଆର ମଝିରେ ଆଣି ଓସ୍ତଗଛ ଲଗାନ୍ତା । କାଲିକୁ ଦେଖିବୁ ସେ ନିଜେ ଓପାଡ଼ି ଫୋପାଡ଼ି ଦେଇଥିବ ।

ଦିଗ —ଆହା-ହା-ହା—ମଲି ମୋର-ପିଲାଟେ—ତୁ ତେବେ ଏ ଗଛ ଓପାଡ଼ିବୁ ନାହିଁ ! ଏ ଗଛ ଏଠି ରହିବ ?

ରୂନୁ —ତୁ ବି ବୋଉ ପିଲାଙ୍କ ପରି ହଉଚୁ ! (ଚାଲିଗଲେ)

ଦିଗମ୍ବରୀ—ଦେଖିଚୁ ନେତ···ଦେଖୁଚୁ ।

ନେତ —ତେମେ ଦେଖଲେ ମା···ଆମେ ତ ନିଇତି ସଞ୍ଜ ସକାଳେ ଏଇ ପାଲା ଦେଖୁଚୁ ।

ଦିଗ —ମୋ ଜନ୍ମ ଜଳି ଝିଅ ତ ମୋ ଶାଶୁ···ମୁଁ ଆଉ କାହାକୁ କହିବି ! ନେତ ଶୁଣିଲୁ ।

ନେତ —କ'ଣ ?

ଦିଗ —(ନେତ କାନରେ ଫୁସ୍ ଫୁସ୍ କରି କହିଲେ)

ନେତ —ହେତେ ସେ କଥା କହ ନାହିଁ ଲୋ'ମା !

ଦିଗ —ଦେଖିଲୁ, ଯେଉଟା ଭଲ କୁଆଡେ ?

ନେତ —କୁଆଡେ ଡୁଆଁ ଟାଏ ମାର ଦେବେଣି-ତାଙ୍କର କଅଣ ଠିକଣା ଅଛି ।

ଧଗ —ଠିକଏ ଦାଣ୍ଡ ଆଡ଼କୁ ଅନାଇଲୁ ।
(ନେତ ବେଲଗନ୍ଧ ମାଟେ ଝଗମ୍ବସ୍ ଗଛଟାକୁ ଧର ଓପାଡ଼ ଆଣି ଭୁଙ୍ଗି ଭୁଙ୍ଗି ଦେଇ ଗଲା ବେଳକୁ ନେତ ଫେର ଆସିଲା ।)

ନେତ —(ଠିକଏ ଗୁପ୍ତ ସ୍ୱରରେ) ଏବେଣ ଦେଖିଲଣି ମା-ଡମ ବୋଉ କଅଣ କଲେଣି !

ଚୁକ —( ଆସୁ ଅସୁ ) କଅଣ ?

ନେତ —ଓସ୍ତ ଗଛଟାକୁ ଓପାଡ଼ ଭୁଙ୍ଗି ଭୁଙ୍ଗି ବାରକା ନେଇ ଗଲେଣ ।

ଚୁକ —ସତରେ !

ନେତ —ଏଇ ଦେଖନ୍ତୁ ।······ଏଇଟେ ମା······ସାନବାବୁ ଆଇଲେଣି ମୁଁ ଯିବ କୁଆଡେ଼ ?
(ରାମ ଭିତରୁ କନ୍ଦି କନ୍ଦି ଆସିଲା)

ରାମ —ଭୁ ବାଉଁଶ ନେଇ ଏ ବାଟେ ଆ ଲେଖଳ (ଦେଖାଯାଉଥିଲ) ଗୋବନ୍ଦ, ଶାବଳଟା···(ଅଟକ ଯାଇ) ଏଇ କ'ଣ ! ମୋ ଗଛ କାଇଁ—କାଇଁ-କାଇଁ ମୋ ଗଛ କାଇଁ— ଗଛ କଏ ଉପାଡ଼ିଲା-କଏ ନେଲା—ମୋ ଗଛ ? ମୋ ଗଛ କଏ ନେଲା ? ?

ଚୁକ —ରାମ···

ରାମ —ନା-ନା, ମୁଁ କିଛି ଶୁଣିବ ନାହିଁ— (କାନ୍ଦି ପକାଇ) କୁହ ମୋ ଗଛ କ'ଣ ହେଲା ?

ଚୁକ —କହୁଚ ଆ ମୋ ପାଖକୁ ଆ···

ରାମ —କିହ ମୋ ଗଛ କିଏ ଉପାଡ଼ିଲା ?
ରୁକ —ହଇରେ ଆଜି କି ବାର କହିଲୁ ?
ରାମ —ମୋ ଗଛ କଅଣ ହେଲା ଆଗ କୁହ !
ରୁକ —ଆଜି ପରା ମଙ୍ଗଳ ବାର, ମଙ୍ଗଳ ବାର ଦିନ କଅଣ କିଏ ଓଷ୍ଠଗଛ ଲଗାଏ ?
ରାମ —କାହିଁକି ? ଲଗାଇଲେ କଅଣ ହୁଏ ?
ରୁକ —ଘରର ବଡ଼ ବୋଉ ମରିଯାଏ ।
ରାମ —ଘରର ବଡ ବୋହୂ । ମରିଯାଏ ?
ରୁକ —ହଁ, ବଡ ବୋହୂ···ଆଜି ଏ ଘରେ ବଡ ବୋହୂ ମୁଁ ।
ରାମ —ଯା ! ଘରର ବଡ ବୋହୂ ମରିଯିବା ଏ, ଏ, ମିଛ କଥା ।
ରୁକ —ପାଞ୍ଜିରେ ପରା ଲେଖା ହୋଇଛି ।
ରାମ —କାହିଁ ପାଞ୍ଜି ଦେଖି ।
ରୁକ —ବଡ ହୁଣ୍ଡାଟାରେ ମଙ୍ଗଳ ବାର ଦିନ କ'ଣ ପାଞ୍ଜି ଦେଖନ୍ତି ?
ରାମ —ମଙ୍ଗଳବାର ପାଞ୍ଜି ଦେଖନ୍ତି ନି । ସତ କହୁଚ ?
ରୁକ —ଭୋଳାକୁ ପଚାରନ୍ତୁ (ଭୋଳା ଆସି ଦରବରେ ଠିଆ ହୋଇଥାଏ-ତାକୁ 'ରୁକ୍ମଣୀ ଇଙ୍ଗିତ ଦେଇ ) କାହିଁରେ ଭୋଳା !
ଭୋଳା —ହଁ ସାନବାବୁ ! ମଙ୍ଗଳବାର ଦିନ କେହି ଓଷ୍ଠଗଛ ଲଗାନ୍ତି ନାହିଁ ।
ରାମ —ଲଗାନ୍ତି ନାହିଁ ତ ତୁ ମତେ ଆଗରୁ କହିଲୁ ନାହିଁ କାହିଁକି ?

ଭୋଳା —ମୁଁ କଅଣ ଜାଣିଥିଲି ଆଜ ମଙ୍ଗଳ ବା'ର ବୋଲି··· (ଡରଯାଇ)

ରାମ —ତା ହେଲେ କଅଣ ହେବ ନୂଆ ବୌ—ମୁଁ ନ ଜାଣି କରି ଧାଇଁ ଲଟେଇ ଦେଇଥିଲି। (ଭୋଳା ଚାଲିଗଲା—ଗୋବରକୁ ନେଇ ନେତ ମଧ୍ଯ ଚାଲିଗଲା)

ରୁକ —କଅଣ ଆଉ ହେବ ? ମୁଁ ମରିବି।

ରାମ —ତୁମେ ମରିବ ? ନା-ନା, (ଚଳକୁ ଅନେଇ) ଜାଇଁ ଗଛ ତ ଆଉ ନାହିଁ।

ରୁକ —ନାହିଁ ଯଦି,ତା ହେଲେ ବଞ୍ଚିଗଲେ ବଞ୍ଚିଯିବ, ହେଲେ ତୋ ହାତରେ ତ ମୋର ଆଉ ଦଣ୍ଡେ ବଞ୍ଚି ରହିବାକୁ ଇଚ୍ଛା ନାହିଁ। ତୁ ମୋ ବୋଉ ସାଥିରେ କାହିଁକି ଏମିତି ଦନବନ୍ତି ହେଉଛୁ ଲଟେଇଛୁ କହ୍, ଏଇଥି ପାଇଁ ମୁଁ ନଈରେ ବୁଡ଼ି ମରିବି।

ରାମ —ତମେ ନଈରେ ବୁଡ଼ି ମରିବ—ସେ କାହିଁକି ହବୁ-ହେଲେ ମୋ' ଉପରେ ଖିଟ୍ ଖିଟ୍ ହେଉଚ !

ରୁକ —ଯେ ଯେତେ ଯାହା କଲେ ବି, ସେ ମୋ ବୋଉ ତୋର ବି-ମାନ୍ୟ ଲୋକ ! (ଦଗମ୍ବରୀ ଆସିଲେ)

ଦଗ —ଏଠେ ଏଇ ପାଲି ଲଗିଚି ରୁକ—ମଜ ପୁଅଟା ପଛେ ଚେତେଣ ନଥାଏ ହୋଇ ବୁଲୁଥାଉ······ମଲା। ମୁଁ ତ ମୋ ପୁଅକୁ କହୁଚି, ଏଇଟା କାହିଁକି ମୋ ଅଣ୍ଡାକୁ କଟ ମଟ କରି ଅନେଉଚି ବା ? ତୁ ଏଣେ ଆ ରୁକ-ଣୀମକୁ ଖାଇବାକୁ ଦବୁ ଆ ! (ଚାଲିଗଲେ)

ରାମ —ଓଃ !! ଡାଆଣୀ ପିଚାଶୁଣୀ ବୁଢ଼ୀର ତଣ୍ଟି ଚପି ମାରି ଦବାକୁ ମନ ହଉଚି।

ରୁକ —ଚୁପ୍-ପୁଣି ସେଇ କଥା ଗୁଲ ଖାଇବୁ ଚାଲ ।
ରାମ —କଏ ରାନ୍ଧିଚ—ସେଇ ବୁଢ଼ୀ ନା ?
ରୁକ —ତୁ ଚାଲ ତ ।
ଧାମ —ନା ମୁଁ ଜେଣିକି ଯିବ ନାଇଁ—ସେ ବୁଢ଼ୀ ଜେଣେ ଅଛୁ—ତେମେ ଏଇଠିକି ଆଣ ।
ରୁକ —ହେଲେ ମୁଁ ତୋତେ ଆଜ ଖୁଆଇ ଦେବ ନାଇଁ । (ବଡ଼ ପାଟିରେ) ଆଲେ ସୁଆ, ତୋ ରାମ ଭାଇ ପାଇଁ ଏଇଠିକି ଭାତ ଆଣ ।
(କନ୍ଧ କନ୍ଧ ଚାଲିଗଲେ—ରାମ ଗୋଟାଏ ଆସନ ଆଣି ପକେଇ ବସିଲା)
ରାମ —ଭୋଲା···ଏ ଭୋଲା ମୋ କାର୍ତ୍ତିକ ଗଣେଶଙ୍କୁ ଆଜ ଖଇ ଖାଇବାକୁ ଦେଇଚ ?
ଭୋଲା —ଦେଇଚି କେତେବେଳୁ ଦେଲିଣି !
ରମ —ଖାଇଲେଟି ?
ଭୋଲା —ଓଃ···ଟପାଟପ୍ ଗିଳିଦେଇ ଚାଲିଗଲେ । ମାଛ ଧରା ସାନବାବୁ···ନଣିଷ ବୁଆପର ବୋଲ ମାନିଚନ୍ତି । ଡାକି ଆସିଲେ, ଯେମିତି ଡାକଦେଇଛନ୍ତି କୁକୁରକୁ ଡାକି ଆସିଲେ ।
ରାମ —ସେ ପର ମେ 'ମାଛ···ଗଣେଶ···କାର୍ତ୍ତିକ ଦି'ଭାଇ··· କାହା ପୁଅ କହିଲୁ ?
ଭୋଲା —କାହା ପୁଅ ପୁଣି ! ତେମେ ତ ନଈରୁ ଜାଆଁଳ ଆଣି ପୋଖରୀରେ ଛାଡ଼ିଲ—ସେ କାହା ପୁଅ କେମିତି ଜାଣିବ ?

ରାମ —ଦୂର୍, ବୋକା ଗଣେଶ କାର୍ତ୍ତିକ ଶିବଙ୍କ ପୁଅ ନୁହନ୍ତି । ମୋ ପୁଅ ନାଁ ହେଉଛି ଶିବ ରାମ···ସେ ମୋର ପୁଅ ।

ହେଲା —ସତେ ଏକା – ସେ ବାପ ଘର ଛମକୁ ମାନନ୍ତି । (ସୁଖି ଭାତ ଆଣିଲା) ଏଇ ଭାତ ଅଫିଲଣି ସାନବାବୁ ଖାଅ । (ଗୃଲଗଲା)

ସୁଖି —ଆଜ ତ ନାମ ଖୁଆଇ ଦବ ନାଇଁ, ଖାଇବ କେମିତି ?

ରାମ —ତୁ ଖୁଆଇ ଦେ ।

ସୁଖି —ବୋଉ ମତେ ହାଣି ଦବ ନାଇଁ । (ଗୃଲଗଲା –-ରାମ ଭାତ ଖାଇ ତରକାରି ଖାଇଲାମାତ୍ରେ ଆକୁଳରେ ଚିତ୍କାର କରି ଉଠିଲା)

ରାମ —ମରିଗଲି···ମରିଗଲି ନୂଆ ବୋଉ ରାଗରେ ମୋ'ପାଟି ପୋଡ଼ି ଯାଉଛି, ଏ ଡ଼ାଆଣୀ ବୁଢ଼ୀଟା ମତେ ମାରି ପକେଇବ । (ରୁକ୍ମଣୀ ଧାଇଁ ଆସିଲେ)

ରୁକ —କଅଣ ହେଲା ରାମ !

ରାମ —ସେ ଡ଼ାଆଣୀଟା ତରକାରିରେ ମେଞ୍ଚାଏ ଲଙ୍କା ପୂରେଇ ଦେଇଛି, ମୋ ପାଟି ପୋଡ଼ି ଯାଉଛି ନୂଆ ବୋଉ ତାକୁ ଏ ଘରୁ ତଡ଼ିଲେ ଯାଇ କରି ମୁଁ ଖାଇବି— (ପଳେଇଲା)

ରୁକ —ରାମ-ଶୁଣିଯା-ରାମ । (ଘରମୁଖିଆ ଆସିଲେ)

ଦାଗ —ସେ କଅଣ କହିଗଲା କଅଣ ରାଗ ହେଉଛି, ମୋ ଆଖି ଦିଟା ଫୁଟି ଯିବ କେ ରୁକ, ମୋତେ ଦିଟା ଲଙ୍କା ବାଟିଛି ।

ରୁକ —ତୁ ତ ଯାଣୁ ବୋଉ ଏ ଘରେ କେହି ଲଙ୍କା ଭଲ ପାନ୍ତି

ନାହିଁ ।—ତୁ ବାଟୁଚୁ କାହିଁକି ? ଛୁଆଟା ଘରଥାଳୀ ଅଇଁଠା ନ କରି ପକେଇଲା ।

ଦାଗ —ଏମିତି କଥା ! ଏ ବୟସେ ମୁଁ ପୁଣି ତୋ ଠାରୁ ରନ୍ଧା ଶିଖିବି ! ହଉ-ବୁଝିଲି ଯେ—ତୋର ସାହସ ବାଢ଼ିଛି ବୋଲି—ନଇଲେ ସେ ମେଞ୍ଚଡ଼ ଟୋକାଟା ପୁଣି କହନ୍ତା—ମୁଁ ବୁଢ଼ୀ ଡାଆଣୀ ! ! ମତେ ପୁଣି ସେ ଏ ଘରୁ ତଡ଼ି ଦେବ । (କାନ୍ଦି କାନ୍ଦି) ମୋ ଭାଇ ପିନା ମରିଯିବାରୁ ଏ ନାଲଠା ଜୀବନ ଧେନି ମୁଁ ଏଠି ପଡ଼ି ରହିଛି ।...ଆଜିଲୋ ସୁଖି କୁଆଡ଼େ ଗଲୁ-ଗଲ-ଆମରି ଏଠି ଆଉ ଥାନ ନାହିଁ—ଶାମ କାହିଁ ଗଲା ?

ସୁଖି —ସେ ଖାଇ ବସିଲେଣି !

ଦାଗ —(ସେଇଠି ବଡ଼ ପାଟିରେ) ତୁ ତ ଖାଇ ବସିଲୁଣି ଶାମ ! —ମୋ ମୁଣ୍ଡ ଖାଇଛି କହିବୁ ଟି ଛଅବ ଘର ହେଇଛି ତୋ ଭାଇ ମୋତେ ଏ ଘରୁ ତଡ଼ି ଦେଉଛି, ଶାମ— ମୁଁ କୁଆଡ଼େ ଉ ଆଣିଥାଏ ମୋ ମାଆଲେ— (ଜୋରରେ କାନ୍ଦିବା) ହଉ ମୁଁ ଦେଖିବି ଯେ କଅଣ ସୁଆଗ କିମ୍ବା ଭୁଲେଇ—( ନେପଡ଼ ଦୃଶ୍ୟ—ଦାଗମ୍ଭର କାନ୍ଦୁଥିଲା ବେଳେ ଦେଖାଗଲା ଶାମ ଗାମୁଛାରେ ହାତ ପୋଛୁ ପୋଛୁ ଆସୁଛନ୍ତି-ମୁହଁରେ ଅଶାନ୍ତିର ଚିହ୍ନ, ପଛେ ପଛେ ରୁକ୍ମଣୀ)

ରୁକ —ଏ କଅଣ ଡମ୍ପ ନଗାଇ ଉଠି ଆସିଲ କାହିଁକି ?

ଶାମ —ମୁଁ ଆଉ ପାରିବି ନାହିଁ ରୁକ୍ମଣୀ-ଏ ଘରେ ମୁଁ ଆଉ ରହି ପାରିବି ନାହିଁ । ମୋର କି ଦୁର୍ଯୋଗ କେଜାଣି ତା ଭଳିଆ ଗୋଟାଏ ପିଲା ଏ ଘରେ ଜନ୍ମ ହେଇଛି

ଆଜ ସ୍ୱାଙ୍କ ଢ଼ଙ୍ଗ ଦେଖୁଚ । ସବୁବେଳେ କଲକଟା କଲ କଳଅ।—ପାଞ୍ଚ ମିନଟ ମଣିଷ ଶାନ୍ତରେ ରହି ପାରିଲ ନାହିଁ ।

ରୁକ —ଯାହାତ ହେବାର, ହେଉଛି । ତୁମେ ଉପାସରେ ଯିବ କେମିତ ? ଆସ ଦିଟା ଖାଇଦେଇ ଯାଅ ।

ଶାମ —ନା ମୋର ଆଜ୍ଞ ବେଳ ନାହିଁ—ମୁଁ ଯାଉଚ—
(ଠିକ୍ ଏତକ ବେଳେ ଦିଗମ୍ବର ପୂବ ପର କାନ୍ଦ କାନ୍ଦ ଆସିଲେ)

ଦିଗ —ତୁ ସତ କହିଲୁ ଶାମ···ତଅଣ ସ୍ୱଗ ହେଇଚ ? ଏଇନେ ପୁଣି ମୁଁ ସ୍ୱାଙ୍କ ଠାରୁ ରନ୍ଧା ଶିଖିବ । ମୁଁ ଏତେ ନ ପାରିଲର !

ଶାମ —ଆପଣ ରୁହନ୍ତୁ—ମୁଁ କଟେଘରୁ ଫେର ସେ କଥା ବୁଝିବ । (ଶାମ ଚୁଲିଗଲେ-ଦୁଃଖ ଓ ବିରକ୍ତିରେ ରୁକ୍ମଣୀ ମଧ ଭିତରକୁ ଚୁଲିଗଲେ)

ନେତ —ଆଗୁ ଏ କଅଣ ହେଲ କହିଲ ବଡ଼ ମା ?

ଦିଗ —କାଇଁକ—ମୁଁ କ'ଣ କଲକ ?

ନେତ —କଅଣ କଲ ? ବାବୁ ଖାଇ ବସିଛନ୍ତ କ ନାହିଁ ତେମେ ଏମିତ ସତ ମିଛ ଗାଇ ବସିଲ ଯେ ସେ ଭାତ ଅଇଁଠା ନ କର ଉଠି ଗଲେ ।

ଦିଗ —ଏଁ ! ! ଶାମ ଖାଇ ନାଇଁ ! ! ମୋ ଆତ୍ମା ପୁରୁଷକୁ ବାଧିଲ ବୋଲି ସିନା ମୁଁ କାନ୍ଦିଲ-ସେ ଭାତ ଉପରୁ ଉଠିଗଲ ନାହିଁ ଯେ ମୋତେ ମାଡ଼ମାର ଉଠିଗଲ ।

ନେତ —ତେମେ ତ ବେ···ଶ ଲୋକ ମା । ଓଲଟି ତାଙ୍କ ଉପରେ ଚଢ଼ଉ ! ସେ ଭାତ ଖାଇଥାନ୍ତେ ନା ତମ

ପୁତ୍ରର ଶୁଣି ଥାନ୍ତେ, କାହିଁକି? ଆଉ ଘଣ୍ଟାଏ ଯାଇଥିଲେ କ'ଣ ଏମିତି ହୋଇ ଯାଇଥାନ୍ତା? ବଡ଼ାଭାତ ଖାଇବାରୁ ସିନା ସେ ମରଣ—ସନ୍ତୋଷ ହୋଇ ଉଠିଗଲେ? ତମର ଏଇ ବୁଦ୍ଧି...ଛି—ଛି...ଛି (ଚାଲିଗଲା)

ଭୋଟ —(ଜୋରରେ କାନ୍ଦ ପକାଇ) କଲେ ତୋ ଉଷ୍ଣ ଶେଷକୁ ଥିଲ -ନା-ଆଉ ଘଣ୍ଟେ ବ ନୁହେଁ। ଗଲ ଲୋ ମୁଁ ଏଘର ଝଗଡ଼ାଇ କୁକୁର ବ ଆମକୁ ଏଠି ରଖାଇ ଦେବେ ନାହିଁ। (କାନ୍ଦ କାନ୍ଦ ଭିତରକୁ ଗଲେ)

—* * *—

## ( ଷଷ୍ଠ ଦୃଶ୍ୟ )

[ ଅଗଣା-ପୂର୍ବବର୍ତ୍ତୀ ଦୃଶ୍ୟର ଅଳ୍ପ କେତେ ଦିନ ପରର ଘଟଣା—ସମୟ ସକାଳ-ଶାମ ଭିତର ଆଡ଼ୁ ଆସିଲେ ]

ଶାମ —ଭୋଲା—ଭୋଲା!!

ଭୋଲା —(ଆସି) ଆଜ୍ଞା!

ଶାମ —ତୁ ଯା ପୁରୋହିତଙ୍କୁ ଖବର ଦେବୁ-କହିବୁ ଆଜି ଉପର ବେଳାକୁ ଆସିଲେ ଶ୍ରାଦ୍ଧ ଦିଆ ଯିବ।

ଭୋଲା —ଆଜି, ଆଜ୍ଞା କାହାଶ୍ରାଦ୍ଧ?

ଶାମ —ଆଉ ଘରେ କାହାର ନୁହେଁ—ଆଜି ତୋ ବଡ଼ ମାଙ୍କ ନନାଙ୍କ ଶ୍ରାଦ୍ଧ।

ଭୋଲା —ଏଇଟି ଦିଆଯିବ?

ଶାମ —ସେ ତ କେଉଁଠି ଅଛନ୍ତି— ଅଜ ହାଉ କେଉଁଠି ଯାଇଥିବ

ଭୋଳା —ସେଇଥି ପାଇଁ ତା ହେଲେ ବଡ ମା କାଲିଠୁଁ ମତେ ତାଗିଦ କରି କହିଥିଲେ, ଭଗୁ କେଉଟକୁ ଡାକି ଦେବାକୁ ।

ଶାମ —କାହିଁକି ?

ଭୋଳା —ମାଛ ଧରିବା ପାଇଁ ।

ଶାମ —ତାକୁ ଡାକିଲୁ ?

ଭୋଳା —ଏତେବେଳେ ଯାଏଁ ? ବଡି ଅନ୍ଧାରରୁ ଯାଇ ଖବର ଦେଇ ଆସିଲିଣି । ସେ ଜାଲ ନେଇ ଆସିବଣି କି କଅଣ ?

ଶାମ —ହଉ ତୁ ଯା ପୁରୋହିତଙ୍କୁ ଖବର ଦେଇ ଆସିବୁ ।

ଭୋଳା —ଗାଈ ଦି'ଟାଙ୍କୁ କୁଣ୍ଡା ଦେଇ ପୁରୋହିତ, ବାରିକ, ପୂଜାରୀ ସମସ୍ତଙ୍କ ଘରେ ଖବର କରି ଆସିବ ।

ଶାମ —ହଉ (ଭୋଳା ଚାଲିଗଲା) ନେତ, ମା କାହିଁ ଗଲେ କି ।

ନେତ —ପୂଜା କରୁଥିଲେ ।

ଶାମ —ପୂଜା ସରିଲା ? (ରୁକ୍ମଣୀ ଆସିଲେ)

ରୁକ —କ'ଣ କହୁଚ ?

ଶାମ —ସ୍ନାନ କାହିଁ ?

ରୁକ —କାହିଁକି ?

ଶାମ —ତାକୁ ନେଇ ମଣିଷ ଆଉ ଚଳି ପାରିବ ନାହିଁ ।

ରୁକ —କାହିଁକି ? କଅଣ ହେଲା ?

ଶାମ —କଅଣ ହେଲା ? ତମେ କଅଣ କିଛି ଜାଣୁନ, ଶୁଣୁନ ? ତମ ବୋଉ ତମକୁ କିଛି କହୁ ନାହାନ୍ତି ?

ରୁକ —ତମକୁ ସେ କଅଣ କହୁଚି କହୁନ ?

ଶ୍ୟାମ ଦୁ'ବେଳା କାନ୍ଦ କାଟି ମୋ ଆଗରେ ଗୁହାରି ହଉଚନ୍ତି
ଯେ ବନ୍ଧ ତାଙ୍କୁ ଏଠି ରଖେଇ ଦଉନ !

ରୁକ୍ ——ରାମକୁ ତମେ କଅଣ ନଆ ଦେଖିଲ ?

ଶ୍ୟାମ ——ସେଇଥି ପାଇଁ କହୁଚି ମୁଁ ଆଉ ପାରିବି ନାଇଁ । ମୋର
ଯେତିକି ହେଲା ସେତିକି ଏଣିକି ତା କଥା ସେ ବୁଝୁ ।

ରୁକ୍ ——ରାମ କଥା ତମେ କହୁଚ ?

ଶ୍ୟାମ ——ଆଉ କାହାକଥା କହିବି ମୁଁ ସାଇରୁ ପାଞ୍ଚଜଣଙ୍କୁ ଡାକି
ତା ଭାଗଟା ତାକୁ କାଢ଼ି ଦେଉଚି—ତା କଥା
ସେ ବୁଝୁ ।

ରୁକ୍ ——ଏ କଥା ତମେ କହି ପାରୁଚ ? ? ? ଦୁଧଖିଆ
ପିଲାଟା ଏ—ଭିନେ ହେଇ ସେ କରିବ କଅଣ ?

ଶ୍ୟାମ ——କଅଣ କରିବ ନ କରିବ ମୋ କଥା ସେ ଜାଣେ—
ଦୁଧଖିଆ ପିଲା ହେଇଚି ! ! !

ରୁକ୍ ——ଏକଥା ତମ ତୁଣ୍ଡକୁ ଆସିଲା କେମିତି ? କଏ ତାର
ଅଛି ବାପ, ନା ମା—ଭାଇ ଭଉଣୀ ତାର କିଏ ଅଛି ?
କାହାକୁ ନେଇ ସେ ଚଳିବ ?

ଶ୍ୟାମ ——ଏତେ ସବୁ କହିଲ ତା କଥା ସେ ବୁଝୁ—ମୁଁ ସେ
ସବୁ କିଛି ଜାଣେ ନାଇଁ ।

ରୁକ୍ ——ହେଲେ ମୁଁ ଜାଣେ, ମତେ ପନ୍ଦର ବର୍ଷ ହେଲୁ ତମର
ଏ ସଂସାର ମୁଁ ଚଳେଇ ଆସୁଚି । ଆଜି ଯଦି ଏ ସୁନା
ସଂସାରକୁ ତମେ ଭାଙ୍ଗି ଚୂନା କରି ଦେବାକୁ ଯାଅ—
ତେବେ ମୋ ପାଇଁ ନଦୀ ପୋଖରୀରେ ପାଣିର
ଅଭାବ ରହିବ ନାଇଁ, ଯେତେବେଳେ ପରେ ତମେ
ଶାନ୍ତିରେ ନିଶ୍ୱାସ ମାରି ରାମକୁ ଭିନେ କରି ନିଜେ

ସୁଖରେ ରହିବ—ତା ଆଗରୁ ମୁଁ ଏ କଥା କରେଇ
ଦେବ ନାହିଁ । (ଶାମ ଯିବାକୁ ବାହାରିଲେ)
କୁଆଡ଼େ ପୁଣି ଯାଉଚ ?

ଶାମ —ମଶାଣିକୁ ।
(ଭିତର ଆଡ଼ୁ ପାଟି କରି କରି ଆସିଲେ ଦଗମୃଷ)

ଦଗ —ଏତେ ଦମାକ ତୋର, କେଉଁଠି ହାକୁ ମାରି ଚାଉଁ
ଜାଲ ଛଟେଇ ନେଲୁ, କେଉଁ ଦନ ଭୁ ମରିବୁରେ
ରଛଜଲା—ମୋ କଣ୍ଠା ଯିବ । ବାସୀ ମୁହଁରେ ପାଣି
ଦେଇନ ଠାକୁରେ—ସତରେ ଯଦ ଭୁ ଆଜ—
ତେବେ ବନ୍ତି ନ ପାହୁଣୁ ଯେମିତି—

ରୁକ —(ବାଧାଦେଇ) ବୋଉ······ଗମ କଅଣ କରିଚ ?

ଦଗ —ମୋ କଥା ତ ସବୁ ମିଛ···ମୁଁ କାହିଁକି କହିବ ?
ତୋର ନେତକୁ ପଚାର ସେଇ କହୁ !

ରୁକ —କଅଣ ହୋଇଚ ନେତ ?

ନେତ —ହେଇ ଭାଗୁତ ଆସିଲାଣି-ତାରି ଠୁଁ ଶୁଣ ମା !
(ଭାଗୁ କେଉଁଠି ଆସିଲା)

ଦଗ —ହଁ କହ ଭାଗୁ··ତୁଇ କହ ।

ଭାଗୁ —ବଡ ମା ମୋତେ ନୂଆ ପୋଖରୀରୁ ମାଛ ଧରିବାକୁ
କହିଲେ—ଯାନବାବୁ କୋଉଠି ଥିଲେ କି ଜାଣି ଆସି
ପଦଛି ଯାଇ କହିଲେ—ଯା, ଏ ପୋଖରୀରୁ ମାଛ ଧରା
ହେବ ନାହିଁ ।

ରୁକ —ସେଇଠୁ ?

ଭାଗୁ —ବଡମା ମତେ ଜଗର କରି କହିଲେ ଏଇଠି ଜାଲପକା

ମୁଁ ଯେମିତି—ଜାଲ ବାନ୍ଧିଚି··· ସାନବାବୁ ମୋଠୁ ଜାଲ ଛଡ଼ାଇ ନେଇ···ମତେ···

ଋଜ —ତାଙ୍କୁ ଡାକ, ଏଠିକି ନେତ।

ନେତ —କାହାକୁ ସେ ? ତମ ପାଟି ଶୁଣି କୁଆଡ଼େ ଛୁ କଲେଣି।

ଋଜ —ଘଗୁ, ତୁ ଯା—ଜାଲ ପକା।

ଘଗୁ —ପୁଣି ଯଦି ସାନବାବୁ ଆସି ମାଡ଼ଧର କରିବେ······

ଋଜ —ମୁଁ ହୁକୁମ ଦେଉଚି ତୁ ଯା······

ବଗ —(ଘଗୁକୁ) ଋହ୍ ! ମୋ ଝିଅ ହୁକୁମ ଦେଲଣି ସେଇଟା ଆଜ କଅଣ କରିବ ? ଋଲ (ଘଗୁ ଋଲି ଗଲା) ମୁଁ ସେଇକଥା କହୁଥିଲି ଋଜ, ଆଜ ମୋ ନନାଙ୍କ ପିଣ୍ଡ, ଜାତି ଭାଇ ପଞ୍ଚଜଣ ଖାଉଛନ୍ତି, ପୋଖରୀରେ ମାଛ ବଢ଼ିଲେ କାର କଅଣ ଦୁଃଖ ଯିବ ? ପାଞ୍ଚ ଜଣ ପେଟ ପୂରେଇ ଖାଇବା କେଡେ ଶୁଭ କଥା—

ଋଜ —ତୁ ତୁନି ହ ବୋଉ···ମାଛ ତ ଧରା ହେଉଚି।

ବଗ —ହଁ ମୁଁ ସେଇକଥା କହୁଥିଲି। ଆଲୋ ନେତ ପୋଖରୀ କୂଳକୁ ଯିବା ଆ (ନେତ ଗଲେ)

ନେତ —ମାଛ ଧରା ହେବ ବୋଲି ତାଙ୍କ ମୋଟେ ଆଜ ଭଲ ଲାଗୁ ନାହିଁ।

ଋଜ —ସବୁଦିନ ତାର ସେଇକଥା ଏବେ ପିଣ୍ଡ ଉପରେ ଘରଣ୍ଟାମ କିଛି ଯୋଗାଡ଼ ହୋଇ ନାହିଁ। ସକାଳୁ କମିତି ମାଛ ଧରା ହେବ ସେଇ ଚିନ୍ତାରେ ଲାଗିଚି। ତୋର ରୋଷ ଘରିଣା ସବୁ ଧୁଆ ହେଲଣି।

ନେତ —ହଁ ମା ଧୁଆ, ଶୁଖା, ଲିପାପୋଛା ସବୁକାମ ସରିଲାଣି ଦେଇଛି, ଖାଲି ଦେହେଇ ଘରଟା ଲିପା ହୋଇନି।

ରୁକ —ଗୁହଳ ଦ'ହା ପୁଣି ଚରୁ ହେବ । ଗୁହାଳ କୁନ୍ଥା
ମୋତେଦେ ମୁଁ ବାନ୍ଧେ !

ନେତ —ପିଣ୍ଡାରୁ ଗୁହାଳ କୁନ୍ଥା ଆଣେ,ମୁଁ ବାନ୍ଧୁ ଦେଉଛି ମା !

ରୁକ —ନାହିଁ ମତେ ଦେ, ତୁ ଗୋଟଇ ଘର ଲିପିବୁ ଯା ।

(ଖେଳା ଆସିଲା)

ଖେଳା —ବାଛୁରୀ ଦ'ଟ କୁ ଟିକଏ ପୋଖରୀ ମୁଣ୍ଡାରେ ବାନ୍ଧି
ଦେବୁ ନେତ ।

ରୁକ —କାହିଁକି ମ ତୁ କୁଆଡ଼େ ଯାଉଚୁ କି ?

ଖେଳା —ପୁରୋହିତଙ୍କ ଘରକୁ ।

ରୁକ —ଆମ ନଡ଼ିଆ ଦ'ଟା ପାରି ଦେଇ ଯା, ହଁ ଖେଳା
ବାରିରୁ ଖଣ୍ଡେ କଦଳୀ କାଟି ଆଣିବୁ ।

ଖେଳା —ହଉ ମା ! (ଚାଲିଗଲା)

ରୁକ —ରାମ କୁଆଡ଼େ ଗଲା ନେତ !

ନେତ —ଟିକଜାଣି ସାହି ଆଡ଼କୁ ତ ଆସି ନାହାନ୍ତି ।

ରୁକ —ମୁଁ କହିଦେଲି ସିନା, ମତେ ଡର ମାଡ଼ୁଚି ପୁଣି
କାଳେ ପୋଖରୀ କୂଳକୁ ଯାଇ ତା ସଙ୍ଗରେ
ଲାଗିବ ।

ନେତ —ହେଇ ପରି ମା, ଭଗୁ ମାଛ ଆଣି ଆଇଲାଣି ।
(ଭଗୁ ଓ ଦଗମ୍ବରୀ ଆସିଲେ--ଭଗୁ ହାତରେ ଗୋଟେ
ବଡ଼ ରୋହି)

ରୁକ —ଏତେବେଳେ ଏତେ ବଡ଼ ରୋହିମାଛ କେଉଁଠୁ ଆଣିଲୁ
ଭଗୁ ? ଏ ଆମ ଗାଧୁଆ ତୁଠ ମାଛ ନୁହେଁତ ?

ଭଗୁ —ହଁ ମା, ଗାଧୁଆ ତୁଠରେ ଯେଉଁ ରୋହି ଦଟା ଖେଳନ୍ତି
ଏ ସେଇଥିରୁ ଗୋଟାଏ ।

ରୁନ —ଏ ମାଛ ଧରିବାକୁ ତତେ କିଏ କହିଲା ?

ଭାଗୁ —ଏ ବଡ଼ ମା' ର ମତେ କହିଲେ ଏଇଥିରୁ ଗୋଟେ ଧର ।

ରୁନ —ସେଇଥି ପାଇଁ ତାହାହେଲେ ରାମ ଜାଲ ଚଟେଇ ନେଇଥିଲା ? ମୋର କ'ଣ ସେତେବେଳେ ଏ କଥା ମନେ ପଡ଼ିଲା ? ବୋଉ ତୁ ସବୁ ଜାଣିଶୁଣି ଏ ମାଛଟାକୁ ଧରିବାକୁ କହିଲୁ ?

ବାପ —ମଲା ପୋଖରୀରୁ ତ ମାଛ ଧରା ହେଲା ଏ ମାଛ କ'ଣ ସେ ମାଛ କ'ଣ ମ ?

ନେତ —ସାନବାବୁ ଦେଖିଲେ ତ ଆଉ ଦୁନିଆ ରହିବ ନାହିଁ । ଖୁଆଇ ପିଆଇ କେତେ କରଧାରେ ଏ ମାଛ ସେ ବଢ଼ାଇଥିଲେଟି, ଏ ମାଛ ତୁମେ ଲୁଚେଇ ଦିଅ ମା !

ବାପ —ମାଛଟାଏ ଧରା ହୋଇଛି ବୋଲି କ'ଣ ସଂସାର ଉଜୁଡ଼ି ଗଲା ? କିଏ କ'ଣ ଚୋରି କରି ଆଣିଛି ଯେ ଲୁଚେଇ ରଖିବ ।

(ରାମ ଆସିଲା, ସେ ମାଛ ମରିହେବା କଥା ଜାଣିକରି ଆସିଛି)

ରାମ —ନୂଆ ବୋଉ ! ନୂଆ ବୋଉ !! ଏଇତ ମୋ ଗଣେଶ, ତୁମେ ହୁକୁମ ଦେଇ କଣ ମୋ ଗଣେଶକୁ ମରେଇଛ ? କୁହ ନୂଆ ବୋଉ, ତୁମେ ହୁକୁମ ଦେଇଥିଲ ?

ରୁକ —ହଁ !

ରାମ — କାହିଁକି ନୂଆ ବୋଉ ମୋତେ କହିଥିଲେ ତ ମୁଁ ମାଛ ଆଣି ଦେଇ ଥାଆନ୍ତି । ମୋ ଗଣେଶକୁ ତମେ

ମାଇଲ କାହିଁକି ? ନୂଆ ବୋଉ ତମର ମୁଁ କେତେ ଷ
କରିଥିଲି ଯେ ତମେ ମୋ ଗଣେଶକୁ ମାଇଲ ?
(କାନ୍ଦୁଥାଏ ରୁକ୍ମିଣୀ ସେଠି ରହି ନ ପାରି ଆଉ
ପାଖକୁ ଚାଲିଗଲେ ଭଗ୍ନ ସେତେବେଳକୁ ଚାଲି ଯାଇ
ଥାଏ ।)

ଦଗ —ତାକୁ କହୁନୁ ଲେ ନେତ—ସେ ଏମିତି ମାଇପିଙ୍କ ପରି
କାନ୍ଦୁଛି କାହିଁକି ?

ରାମ —ନୂଆ ବୋଉ ହୁକୁମ ଦେଇଥିଲେ—ନାଇଁତ ଅଜ
ହାତଗୋଡ଼ ପିଟି ଛଡ଼ୁ କରି ଦେଇ ଥାଆନ୍ତି ।
ଚାଲିଗଲା—

ନେତ —ସାନବାବୁ-ସାନବାବୁ, କୁଆଡ଼େ ଯାଉଚ ସାନବାବୁ ?
ଶୁଣିଯାଅ (ନେତ ରାମ ପଛେ ପଛେ ଗଲା—ଦଗମ୍ବର
ଏଣିକି ତେଣିକି ଚାହିଁ ମାଛଟାକୁ ଉଠାଇ ଧରିଲା)

ଦଗ —ଅଲେ ସୁନ୍ଦ,ପନକଟା ଆଣିଲୁ ।(ମାଛଟା ଧରି ଚାଲିଗଲା)

—* * *— .

## ( ସପ୍ତମ ଦୃଶ୍ୟ )

[ ଅକାନ୍ଦ, ବ୍ୟସ୍ତ ହୋଇ ରୁକ୍ମିଣୀ ଆସିଲେ ]

ରୁକ —କାଇଁ ? ସ୍କୁଲ ତ କୋଉକାଳୁ ଛୁଟି ହେବଣି,
ଏତେବେଳ ଯାଏ ଏ କୁଆଡ଼େ ଗଲା ?

( ନେତ ଆସିଲା )

ନେତ —ତମେ ଆପଣ ମା, ତାଙ୍କ କଥା କ'ଣ ଜାଣନା ?
କୋଉଠି ଖେଳ ବୁଲି ଆସୁଥିବେ ।

ରୁକ —ତୁଚ ଦେଖୁଛୁ ନେତ ! ତନଦନ ହେଲା କୁଆଡ଼ା
ପେଟକୁ ଭାତ ଯାଉ ନାହିଁ । ସେ ମାଛଟା ପାଇଁ ସେ

ଭିତରେ ଭିତରେ ଗୁଣି ହେଉଛୁ । କାଲି ମୁଁ କହିଥିଲି ବୋଲି ଶୁଣି ସେ ଭୁନ ହୋଇ ରହିଲା ।

ନେତ — ତେଟେ ଯିବା ତାଙ୍କ ପ୍ରାଣ ଅଟକିଛି ମା—ସେ ଦିନ ବାଡ଼ି ନ ଖାଇ ବୁଲିଗଲେ, ନେତେ ଉପର ଥ ଅ— ସାନବାବୁଙ୍କୁ ମୁଁ ଦିଟା ମୁଢ଼ି ଖାଇବାକୁ ଦେଲି— ତେମେ ମିଛ ଜାଣିବ ମା—ଯେମିତି ସେ ଶୁଣିଲେ ତେମେ ଖାଇନ-ଅଣ୍ଟିକି ଯାକ ମୁଢ଼ି ବୁଣି ଦେଇ ବୁଲିଗଲେ । (ଦରମ୍ୱଣ ଆସିଲେ)

ଦାଗ —ଚୁକ ଲୋ ଚୁକ—ତୋ ଗୁଣଧନ ଦାଅରଙ୍କ କୀର୍ତ୍ତି ଶୁଣ ।

ଚୁକ —କ'ଣ ହୋଇଛି ବୋଉ ?

ଦାଗ —ମୁଁ ମୂଳରୁ ଜାଣିଥିଲି ପର—ଦିନେ ନା ଦିନେ ସେ କେହୁଲି ଫ ଟକ ଦେଖିବ ।

ଚୁକ —ତୁ ଗଲୁ ନେତ, ଦେଖିଲୁ ରାମ କୁଆଡ଼େ ଗଲା ? ଚଞ୍ଚଳ ଯା— (ନେତ ବୁଲିଗଲା)

ଦାଗ —ଗଲେଣି ଯେ, ଥାନାକୁ ଧରି ନେଇ ଗଲେଣି— ନେବେ ନାହିଁ······ଶାମ ମିଶ୍ରଙ୍କ ଘର ବୋଲି କେତେ ଦିନ କିଏ ମୁହଁ—ଉତ୍ପ୍ରାଧ ଜଗିବ । ···ହିଁ ତୋ ପୁଅକୁ ତୁ ସମ୍ଭାଳି ରଖ ।—ସେ ଦାଗୀଟା ସଙ୍ଗରେ ଆଜି ଯେମିତି କୁଆଡ଼େ ନ ଯାଏ ?

ଚୁକ —କ'ଣ ହୋଇଛି କାହିଁକି କହୁନୁ ବୋଉ ? ଏମିତି ଚୁରିଏ ଗଯୁଛୁ କ'ଣ ?

ଦାଗ —ମଲି, ଯା ଦେଖିଲି-ଯା ଶୁଣିଲି—ସେଇଆ କହୁଚି ନା ମୋ ମନକୁ ଫାନ୍ଦ କରି ଗପୁଚି ! ତୁ ଏବେ ନ ଶୁଣିଲେ

ନାହିଁ । (ଗୁଳିଗଲେ, ବାହାରୁ ଶ୍ୟାମ ଆସିଲେ—ସେ ଏକାବେଳକେ ବିବ୍ରତ ହୋଇ ପଡ଼ିଛନ୍ତି)

ଶ୍ୟାମ —ଶୁଣିଲଣି ଏ ଗାଁରେ ଆଉ ଘରକରି ରହିହେବନାହିଁ । ଯେଉଁ ଜମିଦାରଙ୍କ ଘରେ ଚାକରି କରି ପେଟ ପାଳୁଛୁ —ତାଙ୍କର ପୁଅକୁ ଆଜି ରାମ ମାରି ରକ୍ତ ସ୍ନାନ କରି ଦେଇଛନ୍ତି । ନାକ ଫାଟି ରକ୍ତ ଧାର ଧାର ହୋଇ ବହୁଛି । ଏଥିରେ ଆଉ ଚାକିରି ରହିବ ତ ?

ରୁକ —ରାମକୁ ସେ କ'ଣ ଥାନାକୁ ଧରି ନେଲେଣି !

ଶ୍ୟାମ —ଧରି ନେବାକୁ କେତେ ବେଳ ! ହେଲେ ବାବୁ ଦେବତୁଲ୍ୟ ଲୋକ--ସେଥିପାଇଁ ସବୁ ରକ୍ଷା ହୋଇଗଲା କିନ୍ତୁ ସବୁଦିନ ତ ଆଉ ଏମିତି ଚଳିବ ନାହିଁ । ଶୁଣିବ ଯାଅ—ଦାଣ୍ଡରେ ସବୁ ଲୋକ କ'ଣ କହୁଛନ୍ତି !

ରୁକ —ରାମ ଏବେ ଗଲା କୁଆଡ଼େ ? ଡରରେ କ'ଣ କୁଆଡ଼େ ପଳେଇଲା ?

ଶ୍ୟାମ —ପଳେଇଛି ତ ଚଳାଉ—ଆଜି ତାର ଭିନ୍ନ ହେବାର ବ୍ୟବସ୍ଥା ମୁଁ କରିଦେବି । ବୋଝ ଏବେ ହଜ ମା ପେଟର ଭାଇ ସେ ! ଯାବତ ଭାଇତ ? ଆଜିଯାଏ ଖୁବ ସମ୍ଭାଳିଲି ଆଉ ନୁହେଁ । ହୁଁ ତୁମକୁ ବି ବାରି ବାର କରି କହୁ ରହୁଛି । ସିଏ ଆଉ କାହାରି କଥାରେ ରହିବା ପିଲା ନୁହେଁ, ତାମଜାପିଲାକୁ ଶାସନ କରି ଲାଭ ନାହିଁ—ତାର ସବୁ ଶାସନ, ସବୁ ସ୍ନେହ ଆଦର ବୃଥା ! ଏଣିକି ତା କଥା ସେ ବୁଝୁ ।

(ଦିଗମ୍ବର ବାହାରୁ ଆସିଲା)

ଦିଗ —ମୁଁ ତ ଏଠାକୁ ଆସିଲା ବେଳୁ ଏଇକଥା କହୁଛି ।

କି ଦରକାର ଆମର ଘର ପିଲଟା ପାଇଁ ଏମିତି ଘାଣ୍ଟି ହେବା । ଆଜିଠୁ ତାକୁ ପୁଲିସ ଧରି ନେଇ ଜେଲ ଭିତରେ ପୁରାଇ ଦେଲେ ଥାଆନ୍ତା ! ସାର ଗାଈରେ ତୁମେ ମୁଣ୍ଡ ଟେକି ଚଳି ପାରନ୍ତ କି !··· ମୋ ସାମନାରୁ ଯା ମାନ ଆଜି ସ୍ୱାର ଗୋଟାଏ ନିଷ୍ପତ୍ତି କରିଦିଅ (ଚାଲିଗଲେ)

ଶାମ —ବେଶ୍ ଠିକ କହିଲେ, ଆଜି ସ୍ୱାର ଗୋଟାଏ ନିଷ୍ପତ୍ତି ହୋଇ ଯିବା ଦରକାର ! ( ଚାଲିଗଲେ, ରୁକ ବୋଉଙ୍କ ଭଳି ଠିଆ ହୋଇ ଥାଆନ୍ତି, ନେତ୍ର ଆସିଲ)

ନେତ୍ର —ଲୁଚି ଲୁଚି ଆସି, ହେଇ ସେଠି ତୁନି ହୋଇ ବସିଛନ୍ତି ।

ରୁକ —ଡାକ ଡାକ ଏଠିକି ? (ନିଜେ ଭିତରକୁ ଯାଇ ହାତରେ ଖଣ୍ଡେ ବେତ ଧରି ଫେରିଲାବେଳକୁ ସାମ ବିପରୀତ ଦିଗରୁ ଆସିଥାଏ)

ସାମ —କ’ଣ ନୂଆ ବୋଉ ?

ରୁକ —ତୁ ଜମିଦାରଙ୍କ ପୁଅକୁ ମାରିଚୁ ?

ସାମ —ହଁ !

ରୁକ —କାହିଁକି ?

ସାମ —ଭଲ କଜିଆ ହେଲ—ସେ ମତେ ମାରିଲ ମୁଁ ତାକୁ ମାରିଲି ।

ରୁକ —ତା ନାକରୁ ରକ୍ତ ବାହାରିଲ କାହିଁକି ?

ସାମ —ମୋର ବେଶି ବଳ—ସେ ବେଶି ମାଡ଼ ଖାଇଲା ।

ରୁକ —ହଉ ମୋ ସାମନାକୁ ଆ ।

ସାମ —ତମେ ମତେ ମାରିବ··· ?

ରୁକ —ମାରବ ବୋଲାତ ବେତ ବେନ ଆସିଛୁ ।
ରାମ —ନାଇଁ ନୂଆ ବୋଉ ।
ରୁକ —ଆ, କହୁଛୁ ।
ରାମ —ଆଉ କେବେ ଏମିତି କରବ ନାଇଁ ଆଜ ଦିନକ ଛାଡ଼ିଦିଅ ।
ରୁକ —ଛାଡ଼ ଦେବ ନା ? (ଜୋରରେ ପିଟିବାକୁ ଲାଗିଲେ)
ରାମ —ଛାଡ଼ିଦିଅ ନୂଆ ବୋଉ, ଆଜ ଦିନକ ଛାଡ଼ିଦିଅ, ଓଃ ମର ଗଲି ମରଗଲି, ନୂଆ ବୋଉ—ମରଗଲି ।
(ଡିଗମ୍ବର ଆସି ମାରବାରେ ଦେଖୁ ଥାଆନ୍ତି-ରେଖା ଭିତରୁ ଆସିଲା)
ରେଖା —ତମ ଗୋଡ଼ତଳେ ପଡ଼ୁଛି ମା—ତାକୁ ଛାଡ଼ିଦିଅ— ଆଉ ମାର ନା ।
ଦିଗ —ମଲ ତା ଦିଅରକୁ ମେ ମାରୁଚ, ଏଇଟା ଦିଅ କାହିଁକ ଛାଡ଼ ପଡ଼ୁଚ ବା ?
(ରାମ ଓ ରୁକ୍ମଣୀ ଅନ୍ତରାଳକୁ ଚଳି ଗଲେଣି—ମାଡ଼ ସେମିତି ଚାଲିଥାଏ ।
ରାମ —(ଭିତରୁ) ମୁଁ ମରଗଲି ନୂଆ ବୋଉ, ମତେ ଛାଡ଼ଦିଅ
ରୁକ —(ଭିତରୁ) ଅଜ ମୋ ହାତ ନ ରହିବା ଯାଏ ତତେ ଛାଡ଼ବ ନାଇଁ । ( ଶ୍ୟାମ ଆସିଲେ )
ଶ୍ୟାମ —(ଭିତରକୁ ଲକ୍ଷ୍ୟକର) ଏ କ'ଣ ହେଉଛି, ମାଡ଼ରତ ପୁଣି ଗୋଟାଏ ସୀମା ଅଛି । (ଭିତରକୁ ଗଲେ)
ଦିଗ —ଏତେକ ବେଳକୁ ଯୁଆଙ୍କ ସରାଗ କ ଉଛୁଳ ପଡ଼ୁଛି ?
(ରୁକ୍ମଣୀ ଫେରିଲେ—ଉତେଜନାରେ ତାଙ୍କ ଦେହ ଥରୁ ଥାଏ । ହାତରେ ବେତଟା ଧରି ଥାଆନ୍ତି)

ରୁକ —(ଗ୍ରାମକୁ ଉଦ୍ଦେଶ୍ୟ କରି) ଯେମିତ ଚରବନକୁ ମନେ ରଖିବ ; ( ବେତଟା ସେଇଠ ଫୋପାଡ଼ି ଦେଇ ଚାଲିଗଲେ)

ବଗ —(ବେତଟା ଉଠେଇ ନେଇ) ବେତ ତ ଫାଟିଲା ନାହିଁ ଚରବନକୁ ମନେ ରଖିବ କ'ଣ ? (ଗ୍ରୁଲିଗଲେ)

ଭୋଲା —(ବଗମୁଖ ଆଡ଼େ ବଡ଼ଯାଇ ଚୁଲିପଡ଼ ଗ୍ରାମକୁ ଦେଖି) ସାନବାବୁ, ସାନବାବୁ (କୋଳରେ ଜାକ ଧରିଲା)

—✳ ✳ ✳—

## ଅଷ୍ଟମ ଦୃଶ୍ୟ

[ଅଗଣା—ଭୋଲା ବସି ପଢା ବଳୁଚ, ବଗମୁଖ ଆସିଲେ]

ବଗ —କ'ଣ କରୁଚୁ କରେ ଭୋଲା ?

ଭୋଲା --ପଢା ଖଣ୍ଡେ ବଳୁଚ ମା ! —କ'ଣ କମଥିଲ କ ?

ବଗ —ନାଇଁ ମୁଁ ଆମ ରୁକ କଥା କହୁଥିଲ ତୁଆଟାକୁ ସେଦନ ଗୋରୁ ଭଳ ପିଟି ଦେଇଗଲ ଯେ···ତାର ତ ଅସି ମୁଣ୍ଡକୁ ହାତ ପାଇଲାଣି—ତାକୁ ଏମିତ ମାଡ଼ ମାରବାଟା କ'ଣ ସୁନ୍ଦର ଦଶୁଚ ? ତା ଭାଇତ ତା ଦେହରେ କେବେ ଟିପ ଛୁଆଇଚ ମୁଁ ଦେଖିନ ?

ଭୋଲା —ଏ କଥା ତମେ କହୁଛ କେଉଁ ମା ?

ବଗ —କାଇଁକରେ ମୁଁ ଦଣିଷ ନୁହେଁ କ ?

ଭୋଲା —ମୋର ମୂଳିଆ ମୁଣ୍ଡ ମା—ଏତେ କଥା ମୁଁ କହି ପାରିବ ?

ଧଗ —ଏଇପରି କହୁଛୁ । ଆଉ କ'ଣ କହନ୍ତୁ ?

ଭୋଲା —ତମେ ତ ଅବୁଝ ମଣିଷ ମା—ସେଦିନ ଯାନବାବୁଙ୍କ ମାଡ ଦେଖିଲେ ପଥର ବି ତରଳି ଯାଆନ୍ତା । ଆଉ ତମେ ସେଇଟି ଠିଆ ହୋଇ ମଜା ଦେଖୁଥାଅ ।

ଧଗ —କହେ ନ କହି ନ କହି ତୁ ତ ଆଚ୍ଛା କଥା କହୁଛୁ ! ସିଏ ତ ମାଡ ଖାଉଥିଲା--ମୁଁ କ'ଣ ଯାଇ ତା ପିଠିରେ ପଡ଼ି ଥାଆନ୍ତି ?

ରାମ —(ଘର ଭିତରୁ ବାହାରି ଆସି) ଏ ଭୋଲା !

ଭୋଲା —ତମେ ଏଠି ଅଛନ୍ତି ଯାନବାବୁ ?

ରାମ —ସେ ଡାଆଣୀ ବୁଢ଼ୀକୁ କହିଦେ—ଆମକୁ କଞ୍ଚା ଗିଳିବ ବୋଲି ସେ ଏଠିକି ଆସିଛି ।

ଧଗ —କ'ଣ କହୁଚୁ ? ମୁଁ ଡାଆଣୀ ( ବଡ଼ ପାଟିରେ ) ରୁକ—ଆଲୋ ତୁ କେଉଁଠି କୁଆଡ଼େ ଯାଇଚୁ କି । ଏଣେ ଆସି ଶୁଣି ଯା—ତୋ ଘରର ମଣିଷ କ'ଣ କହୁଚି । (ରୁକ ଓ ନେତ ଆସିଲେ)

ରୁକ —ତୋ ଗୋଡ ତଳେ ପଡ଼ୁଚି ବୋଉ । ତୁ ମନେ ଆଉ କିଛି କହନା—ଏ କଥା ଶୁଣି ଶୁଣି ମୋ କାନ ବଧିର ହୋଇ ଗଲାଣି ।

ନେତ —ତେବେ, ମା-ମା ଗାଧୋଇ ଯିବନି ?

ରୁକ —(ରାମକୁ) ହଇରେ ହେ-ବଦମାସ,ଏତେ ମାଡ଼ଖାଇଥିଲୁ ଯେବେ କୁଆଡ଼େ ପିଠେଇ ଦେଲୁଣି, ତୋ ଦେହରୁ ପରାଏ ଛୁଡ଼ିବଣି ନା ଆଗ ।

ଭୋଲା —(ରାମକୁ) ଯାନବାବୁ ଆସ—ଯାନବାବୁ ଚାଲିଆସ ।
(ଭୋଲା ଓ ରାମ ଚାଲିଗଲେ)

ରୁକ — ସତ କହୁଚି ନେତ ଆଜ ମତେ ମରଣ ହଥନ୍ତା କି ?
ଏ ଜଞ୍ଜାଳରୁ ମୁଁ ମୁକ୍ତ ପାଆନ୍ତି । ମଣିଷ ଆଜ କେତେ
ଦୁର୍ବଳ କହିଲ୍ ? (କାଢ଼ି କାଢ଼ ଗୁଳାଟଲେ)

ଧଗ — ଦେଖିଲୁ ତ ନେତ ! ଆମ ଝିଅଙ୍କ ଢଙ୍ଗ ଦେଖିଲୁ ! !

ନେତ — (ଇଟର ଚୁପା ଗଳାରେ) କଥାରେ କହନ୍ତି ତୁ ଯେବେ
ମାଠିକୁ ମାଠ ମୁଁ ସେଇ ଦରପଡ଼ା କାଠ । ଯାନବାବୁଙ୍କ
ଦୋଷ ଆମ ମାଆଙ୍କ ଆଖିରେ ମୋଟେ ପଡ଼ିବ ନାହିଁ ।

ଧଗ — ମୁଁ ହକ କଥାଟା କହିଲି ତୁ ଏମିତି ଅପସରା ମାନି
ଦେଇଗଲୁ କାହିଁକି ? (ଘାଢ଼ ଶ୍ୱାସ ସହ) ମୋ କପାଳ
ତ ଫୁଟିଛି ମୁଁ କହିବି କାହାକୁ ? (ପଜ ପାଜ ପାଟସ
ଉପରୁ ପିଜୁଳି ଗଛକୁ ଚାହିଁଦେଇ) ସେ ପିଜୁଳି ଗଛରେ
କାଏ କଲେ ନେତ ? ରାମଟି, ହଉରେ ତୁ ଏଇଠାନ
ଏଠିତ ଥିଲୁ । ସେ ଗଛରେ ଯାଇ କେତେବେଳେ
ଉଠିଲୁଣି ? ହଉରେ ହଇରେ···ସେ କଷି ପିଜୁଳି
ଗୁଡାକ ଦାନ୍ତରେ ପକାଉଚୁ କାହିଁକି ? ତୋ ଜନମରୁ
ତ ମଣିଷ କାଳବେଳକୁ ନେଇ ଖାଏ ପାଚିଲା ପିଜୁଳି
ଆଖିରେ ଦେଖିଲି ନାହିଁ । କେତେ ରତେ ଯୁଝୁଚି ?
ସେ କଷି ଗୁଡ଼ାକ କାହିଁକି ଛିଡ଼ାଇ ପକାଉଛୁ ।

ରାମ — ଛିଡ଼ାଉଚି ତ ଆଉ କରୁଚି — ବେଶ କରୁଚି ! ବୁଢ଼ୀ
ମାଙ୍କଡୀ ?

ଧଗ — କ'ଣ କହିଲୁ ? ବୁଢ଼ୀ ମାଙ୍କଡୀ ? ହଉ — ଶମ ଆସୁ
ଆଜି, ବୁଝିବ ତୋ କଥା । ସେସାବୁ ରେସା ନଦେଲେ
ତୋ ମୁହଁ ଭାଙ୍ଗିବ ନାହିଁ ।

ରାମ — ପିଜୁଳି ଦେଖି ତୋ ପାଟିରୁ ନାଳବୋହୁଛି କି ?

ଦିଗ —ଛି: ଛି, ରେ ଅଜବ ! ଏମିତି ଅଜବ ଲୋକଙ୍କ ପୁଣି ଥାଆନ୍ତି । ମାଡ ଖାଇ ଖାଇ ପିଠିରୁ ଚୁଲ ଉଡୁଛି ଯାଉଛି । ପୁଣି ସେଇଁ କଥାକୁ ସେଇ କଥା ।

ରାମ — ଡାହାଣୀ ଚରୁଗୁଣୀ ବୁଢ଼ୀ !

ଦଗ —କ'ଣ ? ମୁଁ ଡାଆଣୀ ଚରଗୁଣୀ ? ପାଜି ହାରାମଜାଦା ତୋର ଏତେ ଦମାକ—ତୁ ଏତେ କହିଲୁ ଚାଲ୍... ଓହ୍ଲେଇ ଆ ଓହ୍ଲେଇ ଆ କହୁଚି ଗଛରୁ ।

ରାମ —କାହିଁକି ? ତୋ ବୋପାର ଗଛ ?

ଦଗ —ଏଇଁ ତୁ ମୋ ବାପ ନା ଧରିଲୁ ? ଶୁଣୁଚ ଶୁଣୁଚ ଲୋକେ ? ରୁକ କାଇଁ ଗଲ-ଆଲେ ରୁକ ତୁ ଗାଧୋଇ ଯାଉଚୁ କ'ଣ ବା ! ଏଣିକି ଆ (ରୁକ୍ମଣୀ ଆସିଲେ)

ରୁକ —ଏ କ'ଣ ରାମ ? ତୁ ଖାଇ ପିଇ ଇସ୍କୁଲ ନ ଯାଇ ଏ ଗଛରେ ଚଢ଼ିଚୁ କାହିଁକି ?

ରାମ —(ଡରି ଡରି) ପିଜୁଳି ଖାଉଚି ନୂଆ ବୋଉ ।

ରୁକ —ମୁଁ ପଚାରୁଚି ଇସ୍କୁଲ ଯିବୁ କେତେବେଳେ ?

ରାମ —ପେଟ ଫାଟୁଚି ପରା ?

ରୁକ —ଭାତ ଖାଇଥାଇ କଞ୍ଚା ପିଜୁଳିଖିଆ ହେଉଚି ସେ !

ଦଗ —ତୁ ମୋ କଥା ଶୁଣ ବା ରୁକ ! ଏ ପୋଡ଼ା ମୁହାଁ ମୋ ବାପ ନା ଧରୁଚି । ମତେ କହୁଚି ଏ କ'ଣ ତୋ ବାପର ଗଛ ।

ରୁକ —ତୁ ତ ବୋଉ ଜାଣୁ ନା ଝିଅ—ଏ ଗଛ ଚଢ଼ିବା କଥା ତୁ ତାକୁ ପଚାରୁଥିଲୁ କାହିଁକି ?

ଦଗ —ଏଁ ମୁଁ ପଚାରିଲି ବୋଲି ସେ ମୋ ବାପ ନା ଧରିବ ତୋର ଏଇ ବହୁର ହେଲା !

ରୁକ —ଝିଅରେ ତୁ କହୁଚୁ ?

ରାମ —ନାଇଁ ନୂଆ ବୋଉ ମୁଁ କହୁ ନାହିଁ ।

ଢଗ —ମୁଁ ମିଛ କହୁଥାନ୍ତେ କି ମା ? ଝିଅଟେ ଏ କଥାସବୁ ତୁ କହୁଚୁ, ତୋ ଜିଭ ଛିଣ୍ଡି ପଡ଼ିବ ନାହିଁ ? ତେବେ କାଇଁଗଲ୍ ନେଉ ସାକ୍ଷୀ ।

ରାମ —ହେ ବୁଢ଼ୀ ତୁ ଏଠୁ ଯାଉଚୁ ନା ପୁଣି ଦେଖିବୁ ?

ଢଗ —କ'ଣ ଦେଖିବରେ ହାରାମଜାଦା···କ'ଣ ଦେଖିବ ?

ରାମ —ମୋ ହାତରେ ଏ ଗୋଟା ପିଜୁଳି ଦେଖୁଚୁ ?

ରୁକ —ରାମ !!

ଢଗ —ମାରିବୁ ! ମାଇଲୁ ଦେଖି ! କେମିତି ତୋ ଜିଭରେ ଝାଡ଼ା ମାଇଲୁ ଦେଖି ।

ରୁକ —ବୋଉ !

ରାମ —ଡାହାଣୀ ବୁଢ଼ୀ (ପିଜୁଳିଟା ଫିଙ୍ଗିଲା, ରୁକ ଓ ଢଗ ଗୋଟାଏ ପାଖରେ ଥିଲେ—ରାମ ଫିଙ୍ଗିଲା ବେଳକୁ ଢଗମୁଣ୍ଡ ଏ ପାଖକୁ ଲୁଚି ଆସିଲେ, ଫଳରେ ପିଜୁଳିଟା ଯାଇ ରୁକଙ୍କ ଦେହରେ ବାଜିଲା)

ରୁକ —ମରିଗଲିରେ ବୋଉ !

ଢଗ —ମାରିଦେଲା ଲୋ ! ଏ ଚଣ୍ଡାଳ ଟୋକାଟା ମୋ ଝିଅ ମୁଣ୍ଡ ଫଟାଇ ଦେଲା । ଆରେ କେଉ, ଯା ଶାମକୁ ଟିକାଏ ଡାକି ଆଣ ।

(ରାମ ଭୟରେ ରୁକ୍ମଣୀ ପାଖକୁ ଆସିଲା)

ରାମ —ମୁଁ ଜାଣି ନଥିଲି ନୂଆ ବୋଉ ।

ରୁକ —ତୁ ଯା ମୋ ପାଖରୁ । ତୁ ଏ ଘରୁ ବାହାରି ଗଲେ ମୋ ଶାନ୍ତି ।

(ଟେବୁଲ ଉପରେ ଥିବା ଭଙ୍ଗା କୁଟେଇ ପରି ଖେଳନା ହାତରେ ଟିଆ ହେଲା—ଶ୍ୟାମ ଆସିଲେ)

ଶ୍ୟାମ —କ'ଣ ହେଲା ?

ରାଧା —ଆଦର ସୁଆଗ କରି ବାଆରକୁ ବଢାଇ ଥିଲ ନା, ତାର ଫଳ, ଦେଲା ମାରି ମୁଣ୍ଡ ଫଟେଇ ଦେଇଛି । (ଶ୍ୟାମ ରାମ ଆଡକୁ ରୁକ୍ଷ ଦୃଷ୍ଟିରେ ଚାହିଁଲେ, କିନ୍ତୁ କିଛି କହିଲେ ନା)

ଶ୍ୟାମ —ହୁଁ ଆଖିପତାଟା ଏକାବେଳକେ କଟିଯାଇ ହୋଇଛି । ଏବେ ମୁଁ ଡାକ୍ତର ପାଖରୁ ଆସେ, ହଁ ତମକୁ ମୁଁ କଥା ସଫା କହି ଯାଉଛି । ଆଜିଠୁଁ ତମେ ତାକୁ ପାଣି ପିଆଇବ ନାହିଁ । ତମକୁ ମନା କଲି ହେଲା ।

ରୁକ୍ମ —ତୁମେ ତୁମ ଘ... ଏକଥା ମତେ କୁହ ନାହିଁ । ଜାଣିଥିଲି ତ ସେ ମତେ ମନ ନାହିଁ ।

ରାମ —ନୂଆ ବୋଉ... ନୂଆ ବୋଉ !
(ଏ ସମୟରେ ଦାଦାମ୍ବର, ସୁଖ, ଗୋବିନ୍ଦ ଆସିଲେ)

ଗୋବିନ୍ଦ—କାଳେଇ ଆମେ ଭାବେ ହୋଇ ଗଲୁଣି ।

ରାମ —ଭାବେ ହୋଇ ଗଲୁଣି ! !

ଗୋବିନ୍ଦ—ହିଁ ତମେ ସେହିରେ ଦେଖ, ଆମ ଘର ଏପାଖେ, ନନା କହୁଛନ୍ତି ତୁମେ ଏପାଖକୁ ଆସିଲେ ତୁମ ବୋଉ ଗୋଳି କରି ଦେବେ ।

ରାମ —କାହିଁକି ?

ଗୋବିନ୍ଦ—ଆଁଡିକୁ ଦେଖିବ ।

ଦାଗ —କାଲେ ସୁଖ ତୁ କହୁନୁ ତୋ ଶାମ ଭାଇ କ'ଣ ସବୁ କହୁଛି !

ସୁଖ —ଶାମ ଭାଇନା କହୁଛନ୍ତି, ସେ ଏମ ଆଜ ଏ ପାଖକୁ ଆସିବ ନାହିଁ । ଏ ପାଖରେ ତାଙ୍କ ଘର, ସେପାଖରେ ତମ ଘର । କାଲି ସକାଳେ କ'ଣ ହବଟି ବୋଉ ।

ଦାଗ —ଜମିବାଡ଼ ।

ସୁଖ —କାଲି ସକାଳେ ଜମିବାଡ଼ ବଣ୍ଟାବଣ୍ଟା ହେବ, ବୁଝିଲ

ବାମ —କିଏ ବାଣ୍ଟିବ ?

ସୁଖ —ଶାମ ଭାଇନା ବାଣ୍ଟିବ । ଆଉ ଗାଁରୁ···କିଏ ଆସିବେ କି ବୋଉ ?

ଦାଗ —ପଞ୍ଚାଏତ ।

ସୁଖ —ହଁ ହଁ ପଞ୍ଚାଏତ ଆସି ସବୁ ବାଣ୍ଟିଦେଇ ଯିବେ ।

ବାମ —ସତରେ ?

ଦାଗ —ହଣ୍ଡି ଓଲଟେଇ···ସେ ପୃଥିବୀରେ ଗାର ପକାଇବା କଥା କହୁନୁ ।

ସୁଖ —ହଁ ଶାମ ଭାଇନା ପୃଥିବୀରେ ନାମକୁ ଗାର ପକାଇ କହୁଛନ୍ତି । ସେ ତମ କଥା ବୁଝିବ ନାହିଁ କି ତମକୁ ପାଟି ଫିଟାଇବ ନାହିଁ ।

(ଏ ପାଖରେ ରୁକ୍ମଣୀ ଓ ମେଘ ଆସିଲେ)

ରୁକ —ତୁ ବୁଝି ହଉଛି ସୁଖ ।

ଦାଗ —ଜାଣି ଶୁଣି ଆଜ କେମିତି ମାରନ୍ତା, ଆମେ ଦୁହେଁ ତ ଏଠି ଥିଲୁ ମୋ ମୁଣ୍ଡରେ ନ ବାଜି ତୋ ମୁଣ୍ଡରେ ବାଜିଲା । କାନ ମୁଣ୍ଡାରେ ବାଜିଥିଲେ ଆଜ କ'ଣ ପ୍ରାଣ ରହି ଥାଆନ୍ତା ।

ଛୁକ —ମୋର କଣ୍ଠ ହୋଇନ । (ସ୍ୱାମୀଙ୍କୁ) ତୁମେ ଯିବନି ତମ କାମରେ ।

ଶାମ —ସେ ସବୁ କଥା ମୁଁ କହୁ ଶୁଣିବ ନାହିଁ । ମୁଁ ନସ୍ୱମ ଦେଇ ଗଲି ମୋ ଜୀବନ ଉପରେ ଯାହା ତମର ଲୋଭ ଥାଏ, ତେବେ ଆଜଠୁଁ ତାକୁ ପାଟି ଫିଟାଇଦେ ତାର ଖିଆ ପିଆ ବା ନଲଭ କୌଣସି ଖବର ତୁମେ ବୁଝିବ ନାଇଁ, ଆଜିଠାରୁ ସେ ତମର କେହି ନୁହେଁ (କହିସାରି ନିଜେ ଗୃହ ଲାଗଲେ ଗମ ଅସଧାପୂ ଭାବରେ ଦୂରରେ ଠିଆ ହୋଇଥିଲ, ଆଖିରେ ଲୁହ, ସେ ଆଉ ରହି ନ ପାରି ପଳାଇଲା । ନିଜ ଶାସ୍ତିର ଅପେକ୍ଷା ସ୍ୱାମୀଙ୍କର କଥା ତାଙ୍କୁ ଅଧିକ ଆଘାତ ଦେଲା । ତାଙ୍କର ଅଦୃଷ୍ଟ ଚିତ୍କାର ଶୁଣା ଯାଉଥିଲା ବେଳେ ପ୍ରଥମ ଅଙ୍କର ଯବନିକା ନଇଁ ଆସିଲା ।

—* * *—

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ଅଗଣାର ସେଇ ଦୃଶ୍ୟ । କନ୍ଥ ବାଉଁଶ ବାଡ ଦିଆ ହୋଇ ଅଗଣାକୁ ଦୁଇଭାଗ କରା ଯାଇଛି । ଭିତରୁ ରାମ ଆସିଲା । ବାଡ଼ ଦେଖି ସେ ଯେମିତି କିଛି ବୁଝି ପାରିଲା ନାହିଁ]

ରାମ —ଏ ସବୁ ଏଠି କ'ଣ ହେଉଛି ? ଏ ଦୁଆରଟାରେ ଏ ବାଡ ଦିଆ ଯାଉଛି କାହିଁକି ? ଏଠି ଏ ବାସନ କୁସନ କ'ଣ ଥୁଆ ହୋଇଛି ? (ଡାକିଲା) ନେତ— ଏ ନେତ । (ନେତ ବାହାର ପାଖେ ଆସିଲା) ଏ ସବୁ କ'ଣ ହୋଇଛି ?

ନେତ —ମୁଁ ଜାଣି ନେଇ ଲୋ ମା' କ'ଣ ହୋଇଛି ?

ରାମ —ନୂଆ ବୋଉ କାହାନ୍ତି ?

ନେତ —ସେ ଘରେ ଶୋଇଛନ୍ତି । (ଚାଲିଗଲା)

ରାମ —ନୂଆ ବୋଉ ··ମୁଁ ସେ ଘାଟକୁ ଯିବ ନୂଆ ବୋଉ ! କୋଉବାଟେ ଯିବ । ରହ ବାଡପଟେ ବୁଲି ଆସେ । (ପ୍ରାୟ ଯେତେ ସେତେ ଏ ପାଖକୁ ଆସିଲା) ନୂଆବୋଉ (ରୁକ୍ମଣୀ କିଛି ନ କହି ତାକୁ ପଛକରି ଠିଆ ହୋଇ ଥାଆନ୍ତି )

ଢଗ —ମନ କହିବାକୁ ଏକା—ତୁ ହେଲ ପଥର ମାର
ମଣିଷକୁ ଅଧାପ୍ରାଣ କରି ଛାଡ଼ିବୁ——ତା'ର ଗଣ ନଦୃମ
ନ ପଚାରି ଗୃହ କ'ଣ ? ପାହାନ୍ତ ହେଲଣି—ହେଲଣି
ତୁ ଆଜ ଏ ଘର ଦୁଆର ମୁହଁ ମାଡ଼ନା ଗୀମ, ହେତା
ପାଇଁର ସେ ଆଜ ତା ଗେରସ୍ତ ନପୁମଠା ଆଡ଼େଇ
ଦେଇ ଯିବ ନାଇଁ ?

ରୁକ —ତୁ ରହ ବୋଉ ! ତା' କହ ସେ ଏଠୁ ଚାଲିଯାଉ ।

ଗୀମ —ଯାଉଥିଲା ତ ଆଗେ, ଭୋକରେ ପଡ଼େ ମୋ ହାଂଯା
ଉଡ଼ି ଗଲଣି, କେତେବେଳେ ଯାଇ ଗଣ୍ଡେ ଖାଇଥିଲା ।

ରୁକ —ମୁଁ କିଛି ଜାଣିନାଇଁ ଲେ ସୁଖି ! ସେ ନେତକୁ କହୁ ।

ଗୀମ —ନେତ ହେଉ ମୁଁ କିଛି ଜାଣିନାହିଁ ନୂଆ ବୋଉ ।
ତମେ ମତେ ଖାଇବାକୁ ଦେଇ ପାଅ ! ନୂଆ ବୋଉ···
ଶୁଣିବ ନାଇଁ ନୂଆ ବୋଉ ? ହଉ ନ ଶୁଣ, ନ ଖାଇ
ମରିବ ପଛେ ଆଉ କାହାକୁ ମାଗିବ ନାହିଁ ।
(ସେ ପାଖକୁ ଚାଲିଯାଇ ବାରଣ୍ଡା ଉପରେ ଶୋଇଲା ।
ନେତ ମଧ ତା ପଛେ ପଛେ ଗଲା )

ଢଗ —ଆହା-ହା । ଏ ଧମକାଣି ସେ କାହାକୁ ଦେଖଉଚ ବା ?
ଈଏନେ ତ ହେଲୁ । ତୋ କଥା ତୁ ବୁଝିବୁ ! ଏ ଝିଅଙ୍କ
ମଠକ କାଇଁକି ?···ଆସରେ ପିଲାଏ···ଆସ ।
(ଢଗମ୍ବଷ, ସୁଖି ଓ ଗେବନ୍ଦ ଚାଲିଗଲ ପରେ ନେତ
ହାତରେ ଗୋଟାଏ ଡ଼ାଲ ଧରି ଗୀମ ପାଖକୁ ଗଲା)

ନେତ —ସାନବାବୁ ! ଶୋଇଲ କାଇଁକି ? ଉଠ ଏ ମୁଡ଼ି
ଦଟା ନଅ ଖାଇ ଦଅ ।

ଗୀମ —ମୁଁ କିଛି ଖାଇବି ନାହିଁ ।

ନେତ —ମୋ ସୁନାଟା ପରା, ନିଅ !

ରାମ —ଯାଆ ଏଠୁ (ନେତ ହାତକୁ ଠେଲି ଦେବା ଫଳରେ ଡାଲିମୁଡ଼ି ବିଞ୍ଚି ହୋଇ ଗଲା)

ନେତ —ମୁଁ ଆଉ ପାଇବି ନାହିଁ ଲୋ ମା—ସବୁ ଗୁଡ଼ାକତ ବିଞ୍ଚି ହେଲା । (ଚାଲିଗଲା)

(ଟିକିଏ ପରେ ରାମ ଉଠି ଅଗଣା ସାରା ବୁଲି ଗପିବାକୁ ଲାଗିଲା)

ରାମ —ଉଃ...ବାଣ ଦେଉଛନ୍ତି...ଝପୁମ କରୁଛନ୍ତି !! ମୁଁ ବାଣ ଫାଣ କରୁ ମାନସ ନାହିଁ । ସେ କାହିଁ ବାଣ ଦେବାକୁ । ସେ କ'ଣ ମୋ ନିଜର ଝିଅ ? ମୁଁ ତ ନୂଆ ବୋଉକୁ ମାଗି ନଥିଲି । ମୁଁ ସେ ଡାଆଣୀ ବୁଢ଼ୀଟାକୁ ମାଗିଥିଲି ।

(ଏତିକିବେଳେ ଝରମୁଣ୍ଡ ହାତରେ ଗୋଟାଏ ନବଧଣ୍ଡ ଯେଉଁବାଟେ ଦୁମ୍ ଦୁମ୍ ହୋଇ ଚାଲିଗଲେ)

ଉଃ ଭାଗିଗଲା ମନ୍ତ୍ର କେହି କଥା ନ କହିଲେ । ମୁଁ ମୋର ରାନ୍ଧିବି, ବାଢ଼ିବି, ଖାଇବି, ଭୋଳା—ଏ ଭୋଳା ! (ଭୋଳା ଆସିଲା) ଭୋଳା ତୁ ମୋ ଚାକର !

ଭୋଳା —ତମ ଚାକର ?

ରାମ —ତୁ ଆଉ ସେ ଘରକୁ ଯିବୁ ନାହିଁ, ତୁ ଆଜିଠୁଁ ମୋ ଚାକର ବୁଝିଲୁ ।

ଭୋଳା —ସାନବାବୁ, ମୁଁ ତମ ଚାକର ।

ରାମ —ତୁ ଯା ପୋଖରୀରୁ ମାଛଧରି ଆଣ !

ଭୋଳା —ମାଛ ! ହଉ ଯାଉଚି (ଯାଉ ଯାଉ ଫେରି) ସାନବାବୁ କାଲି ତ ନାହିଁ । କାଲି ବଡ଼ ବାବୁଙ୍କ ଘରେ ।

ରାମ —ନେଇଆ ଯା !

ଭୋଲା —ସେ ବୁଢ଼ୀଟା କଟର କଟର ହେବ । ଆଜି ଦିନକ ଯାଉ ମୁଁ କାଲି ମାଛ ଆଣି ଦେବ ।

ରାମ —କାଲି ସକାଳୁ ଉଠି ଆମ ପୋଖରୀରୁ ମାଛ ଧରିବୁ । ମୁଁ ଏକା ଏକା ସବୁ ଖାଇବ । କାହାରିକୁ ଦେବି ନାହିଁ । ହଁ ମୁଁ ଏକା କଣ୍ଟା ବଉଡ଼ (ବାଡ଼ମ୍ବରୀ ପାଣିଗଛ ଧରି) ଏ ବାଡ଼ି ନେଇ ଁ ଏ ପାଖକୁ ଯେ ଆସିବ ତାକୁ ଠେଙ୍ଗେଇ ଗ୍ରେଟା କରି ଦେବ ।

(ବାଗମ୍ବରୀ ଦୁଲ୍‌ଦୁଲ୍ ହୋଇ ଝୁଲିଗଲେ । ଭୋଲା ସେ ଜଠା ଚୂଲିଟା କାହିଁ ?

ଭୋଲା —ଏଇ ଘରେ ଅଛି ସାନ ବାବୁ !

ରାମ —ମୁଁ ଚୂଲି ଲଗେଇ ହାଣ୍ଡିରେ ପାଣି ଦେଉଛି । ତୁ ଯା ଚାଉଳ ଧୋଇ ଆଣ ! ଭଗବାନ୍ ମୁଁ ଉପାସ ରହିବି ନା ! !

(ଘର ଭିତରକୁ ପଶିଗଲେ )

—ତୃତୀୟ ଦୃଶ୍ୟ-ଅଗଣା—

[ସୁଷି ନଇଁପଡ଼ି କ'ଣ ଦେଖୁଥାଏ, ରୁକ୍ମଣୀ ଆସିଲେ]

ରୁକ —ସେଠି କ'ଣ ଦେଖୁଚୁ କି ସୁଷି ?

ସୁଷି —ତୁ ଆସୁନୁ ନାନୀ, ଦେଖିବୁ—ରାମ ଭାଇନା କେମିତି ବଡ଼ଫୁଟା ଭାତ ଗୁରୁକ ଖାଉଚି, ଡାଲି ତରକାରୀ କିଛି ନାହିଁ, ଦେଖନା ନାନୀ କମିତି ମୁଡ଼ି ଗ୍ରେବେଇ ଭଳି ଗ୍ରେବେଇ ଗ୍ରେବେଇ ଖାଉଚି । ତା ପେଟକୁ ମାରିବ ନାହିଁ ।

( ରୁକ୍ମଣୀ କିଛି ନ କହି ଲୁହ ପୋଛୁ ଥାଆନ୍ତି )

( ସେତେବେଳକୁ ବଗମ୍ବର ଆସି ଏ ସବୁ ଲକ୍ଷ୍ୟ କଲେଣି )

ବଗ —ଶ୍ରୀଧର ବୋଲି କେମିତି ଫନ ଫନ ହେଉଥିଲୁ, ଦେଖିଲୁ ବେଳକୁ କଣ୍ଠା ଶୁଖିଲ ଯାଉଛି ।...... ମଲୁ ସିଏତ ତାର ଆପେ ଆପେ ଶ୍ରାଦ୍ଧବାଡ଼ି ଖୋଳିଲା ତୋ ଆଖିରୁ କାଇଁକି ଲୁହ ଝରୁଚି କି ରୁକ ? ତୋ ମୁହଁଟାତ କାଇଁକି ଫଣ ଫଣ ଦିଶୁଚି । ଶୋଇ ପଡ଼ୁ ଯା; ଆଲୋ ସୁଖ ରୁ ଖାଇବୁ ଆ ।

—* * *—

## ( ଦ୍ୱିତୀୟ ଦୃଶ୍ୟ )

[ ସମସ୍ତ ରାତି ଅଗଣା, ଦୃଶ୍ୟ ଆରମ୍ଭରେ ଦେଖାଗଲା, ରାମ ଦୁଇହାତ ଛନ୍ଦି ତା ଭିତରେ ମୁଣ୍ଡଗୁଞ୍ଜି ବସିଚି । ଟିକଏ ପରେ ଉଠି ଠିଆ ହୋଇ ମନକୁ ମନ ଗପିବାକୁ ଲାଗିଲା ]

ରାମ —ମୁଁ ତ ଜାଣିଶୁଣି କାହାକୁ ମାରି ନାହିଁ । ନୂଆ ବୋଉଙ୍କୁ ମୁଁ ମାରିବ କାଇଁକି ? ଭାଲେଇଟା ଗୁଲିପାଉଥିଲି । ମୁଁ ତାକୁ ମାଇଲି ଛିଟିକି ଯାଇ ନୂଆ ବୋଉଙ୍କ ଦେହରେ ବାଜିଲା । ମୁଁ ପୁଣି କୁଆଡେ ଗାଳି ଦଉଥିଲି । କାହାକୁ ତ ମୁଁ ଗାଳି ଦେଇନି ? ମୁଁ ପ ହା ଗୋବରକୁ ନା-ନା ଭେଲାକୁ ଗାଳି ଦେଇଥିଲି, ଭେଳ କୁ ଗାଳିଦେଲେ କ'ଣ ଏମିତି ହୋଇଗଲା, ତାକୁ କ'ଣ କେହି ଗାଳି ଦଅନ୍ତି ନାହିଁ ।...ତାକୁ ଗାଳି ଦେଲେ କ'ଣ ହେଲା ?

[ କଥାର ଶେଷ ଅଂଶକୁ ସେ ଥକ୍‌କା ହୋଇ ପୁଣି ପିଣ୍ଡା ଉପରେ ବସି ପଡ଼ିଲା—ସେ ଯେମିତି ଦୁର୍ବଳ ହୋଇ ପଡ଼ୁଛି, ତା କଥାର ଶେଷ ଅଂଶକୁ ଧନମୂର୍ଖ ଆସି ଠିଆ ହୋଇ ଥାଆନ୍ତି ଏ ପାଖରେ, ସେ ଅନ୍ୟ କାହାକୁ ଉଦ୍ଦେଶ୍ୟ କରି ହାତ ଠାରିଲେ ନେତ ଆସିଲା ]

ଧନ —(କ୍ରୂର ହସ ହସି) ଦେଖୁଛୁ ନେତ--କେମିତି ଉପରେ ପଡ଼ି କଥା କହିବାକୁ ହଉଛି । ଧନ ସାହୁ ଏମିତି ଗପି ହଉଥିଲେ କଏ କାଇଁକି ତାକୁ ପାଟି ଫିଟେଇବଉ ।

ଝିଅ —(ହେଉ ପିଣ୍ଡାରୁ ଠିଆ ହୋଇ) ମୋ କଥା କଅଣ କେହି ଶୁଣିବେ ନାହିଁ ! ମୁଁ ତ କହୁଛି—ହଜାରବାର ସତ୍ୟ କରି କହୁଛି—ଆଜି ଏମିତି ହେବ ନାହିଁ—ହେବନାହିଁ—ହେବ ନାହିଁ ! ! !

ଧନ —ଶଏ ବାର ସତ୍ୟ କଲେ କଏ କାହାଁକି ତୋ କଥା ଶୁଣିବ କୁ ଯିବ ! ! !

ନେତ —ତେବେ ତାଙ୍କ କଥାରେ କାହିଁକି ଭଲ ଅଛି କୁଆ ଡାଉଛ ବଡ଼ମା ? ପିଲଟା ଦୁଇ ଦିନ ହେଲା ନଖାଇ ନପିଇ ଛଟପଟ ହେଉଛି । ତମର ଟିକିଏ ଦୟା ହେଉ ନାହିଁ । ଏହି କବାଟ ଦେଇ ଶୋଇଲେଣି ନା କ'ଣ ? ସକାଳ ବେଳାରୁ ଚୂଲି ଜଳି ନାହିଁ । ଏ ବେଳା ବି କ'ଣ ରନ୍ଧାବଢ଼ା ହେବ ନାହିଁ ।

ଧନ —ତୋର କିସ କାହିଁକି ଫାଟି ପଡ଼ୁଛି କହେ ନେତ । ଯେତ ତାର କବାଟ ଦେଇ ଖାଇବାକୁ ବସିବଣି ତୁ

ଏଠି କାହିଁକି ଶୁଣି ହଉଚ । ଶୁ ଯା ତୋ କାମରେ ।
(ଋକ ଆସିଲେ)

ଋକ —ଗୋବନ୍ଦ ଶୋଇଲଣି କେତ ?

କେତ —ହଁ ।

ଋକ —ରାମ କାହିଁ ଗଲା କି ?

କେତ —ମୋ ଘରେ ଶୋଇଲେଣି ନା କ'ଣ ? ଏଇ କେନ ଉଟି ମନକୁ ମନ କେତେ କଥା ଗପୁଥିଲେ ।

ଋକ —ମୁଁ ଶୁଣିଚ, କିଛୁ ଖାଇଲା ନାହିଁ ।

କେତ —କେତେବେଳେ ଆଜ ଖାଇଲେ ?

ଋକ —ସେମିତି ଶୋଇଲେ ? ଠାକୁରେ ଭରସା ? ବୋଉ ଆଜ ସୁଖ ପାଇଁ ଜାଗା କର କେତ । ରାତି ବେଶି ହେଲଣି !

କେତ —ତେମେ ଖାଇଚ ନାହିଁ ମା ? ଭଲଦିନ ହେଲା ସେମିତି ପଡ଼ି ରହିଚ ?

ବଗ —(ଅନ୍ତରାଳରୁ) କେତ ?

କେତ —ଯାଉଚ, (ଚାଲିଗଲା, ଭେଲା ମେ ପାଖରେ ଆସିଲା)

ଭେଲା —ସାନବାବୁ···ସାନବାବୁ ?
( ରାମ କବାଟ ଖୋଲି ଆସିଲ ) ଶୋଇ ପଡ଼ିଥିଲେ ସାନବାବୁ ?

ରାମ —ମୁଁ କ'ଣ ନଡରେ ଶୋଇଥିଲି କି ?

ଭେଲା —ଆଜ୍ଞେ ।

ରାମ —ମୁଁ ଭାବୁଥିଲି ।

ଭେଲା —କ'ଣ ?

ରମ —ନୂଆ ବୋଉ ଦିନେ ମତେ କହୁଥିଲେ ଏ ଘରୁ ଚାଲି
ଯିବାକୁ ମୁଁ ଚାଲିଗଲେ ତାଙ୍କ ମନ ଖୁସି ହେବ ।

ଭୋଳା —କୋଉ ଦିନ ସେ କଥା ମନଧରେ କହି ଦେଉଥିଲେ
ଆଜ ତମେ ସେ କଥା ଭାବୁଚ କାହିଁକି ? ମୁଁ ତ ଉଠା
ଆଣିଲାଣି, ଆସ ଖାଇବାକୁ ଦିଏ ।

ରମ —ଭୋଳା—ମୁଁ ଚାଲି ଯିବି ?

ଭୋଳା —କୁଆଡେ଼ ଯିବ ସାନବାବୁ ?

ରମ —ମୁଁ ଆଉଡେ଼ ହଉ ଚାଲି ଯିବି । ତୁ ଆ ମୋ ଲୁଗାପଟା
ଦିଖଣ୍ଡ ସଜାଡି଼ ଦେ ।

ଭୋଳା —କେମିତି ବାଯ୍ଯା ହେଲ ସାନବାବୁ ! ଏ ରାତିଠାରେ
କୁଆଡେ଼ ଯିବ ?

ରମ —ରାତି ! ! ରାତି ପାହିଲା ବେଳକୁ ମୁଁ ଚାଲିଯିବି । ତୁ ଯା
(ଘର ଭିତରକୁ ଗଲା)

ଭୋଳା —ସାନବାବୁ······ଅଗ ଦିଟା ଖାଇଦିଅ, ସାନବାବୁ !
(ସେ ମଧ୍ୟ ଭିତରକୁ ଗଲା)

—✳ ✳ ✳—

## ( ତୃତୀୟ ଦୃଶ୍ୟ )

[ ଗ୍ରାମ୍ୟ ରାସ୍ତା, ପରଦିନ ସକାଳ, ଜଣେ ଲୋକ ଗୀତ ଟିଏ ଗାଇ ଚାଲିଗଲା, ପରେ ରାମ ଓ ଭୋଳା ଆସିଲେ । ଭୋଳା ହାତରେ ଗୋଟିଏ ଲୁଗା ପୁଡ଼ିଆ ]

ଭୋଳା —ସାନବାବୁ !

ରାମ —କ'ଣ ?

ଭୋଳା —ମତେ ଭଟେଇର ମାଡ଼୍ଟ ?

ରାମ —କାହିଁକି ?

ଭୋଳା —ତମେ କାହାକୁ ନ କହି ଏମିତି ଚାଲି ଆଇଲ ।

ରାମ —କହିବି କାହାକୁ ? କେହି ପରା ମତେ ପାଟି ଫିଟାଉ ନାହାନ୍ତି ।

ଭୋଳା —ହେଲେ କ'ଣ ହେଲା, ମା ଶୁଣିଲେ କ'ଣ ଥପୁଧର ରହିବେ ?

ରାମ —ହିଁ ରହିବେ । ସେଇତ ମତେ ଘର ଛାଡ଼ି ଚାଲିଯିବାକୁ କହିଥିଲେ ।

ଭୋଳା —ତେମେ ଜାଣିବ ସାନବାବୁ ସେ ଖାଲି ଏମିତି କଥାକୁ କହିଦେଇ ଥିଲେ ନା ? କ'ଣ ସତରେ କହିଥିଲେ ?

ରାମ —ସତରେ କହି ନଥିଲେ ତ ତିନି ଦିନ ହେଲାଣି ମତେ କଥା କହୁ ନାହାନ୍ତି ? ଖାଇବାକୁ କାହିଁକି ଡାକୁ ନାହାନ୍ତି ? ମୁଁ କ'ଣ ନୂଆ ବୋଉକୁ ଛାଡ଼ି କଅଣ କୁଆଡ଼େ ଯାଆନ୍ତି । ଯେତ ମତେ ପାଖରେ ପୂରାଉ ନାହାନ୍ତି । ମୁଁ ରହିବି କୋଉଠି ?

ଭୋଳା —ତେମେ ସିନା କହୁଚ ସାନବାବୁ ! ମୋ ଛାତି ଖାଲି ଦକ ଦକ ହଉଚି ।

ରାମ —ତୁ ଚାହେଁଲେ ଏଠୁ ଘରକୁ ଫେରି ଯା ।

ଭୋଲା —ତେବେ କୋଉଠିକି ଯିବ କହିଲ ?

ରାମ —ମୁଁ ମାମୁଁ ଘରକୁ ଯିବି ।

ଭୋଲା —ମାମୁଁ ଘରକୁ··· ? କେଉଁ ଦେଶ ? ଏତେବାଟ ଯିବ କେମିତି ?

ରାମ —ରେଳ ଗାଡ଼ିରେ ଯିବି ।

ଭୋଲା —ତେବେ ତ ବାଟ ଘାଟ କିଛି ଦେଖିନ ? ଏକା ଏକା କେମିତି ଯିବ ?

ରାମ —ମୁଁ ପଚାରି ପଚାରି ଚାଲି ଯିବି—ଦେ ମୋ ପୁଟୁଳି ଦେ ।

ଭୋଲା —ମୋର ଗୋଟାଏ କଥା ରଖିବ ସାନବାବୁ ?

ରାମ —କ'ଣ ?

ଭୋଲା —ଚାଲ ମୁଁ ତମ ସାଙ୍ଗରେ ଯିବି—ତମକୁ ତମ ମାମୁଁ ଘରେ ଛାଡ଼ି ଆସିବି ।

ରାମ —ତୁ ଯିବୁ ଭୋଲା ? ସତରେ ତୁ ଯିବୁ ?

ଭୋଲା —ହଁ ।

ରାମ —ହଉ ଚାଲ, ଦି ଜଣ ଯାକ ସାଙ୍ଗ ହୋଇ ଯିବା— ଖୁବ ଭଲହେବ । ଆ, (ପାଦେ ଆଗେଇ) ଭୋଲା ।

ଭୋଲା —କ'ଣ ସାନବାବୁ ?

ରାମ —ମୋ ପାଖରେ ତ ଟଙ୍କା ନାହିଁ-ଆମେ ଯିବା କେମିତି, ଟିକେଟ କେମିତି କରିବା ?

ଭୋଲା —ଟଙ୍କା ନାହିଁ ? ଟଙ୍କା ଆଣିବ ? ତେବେ କୋଉଠୁ ? ଟିକେଟ ଦି'ଟଙ୍କା ପଡ଼ିବନା କଅଣ ?

ରାମ —ଚାଲି ଚାଲି ଚାଲି ଯିବା ।

ଭୋଲା —ସହଜ ବାଟ ସାନବାବୁ, ତେମେ ଚାଲି ପାରିବ ନାହିଁ

ରାମ —ଠିକ୍ ! ଠିକ୍ ମନେ ପଡ଼ିଲା ! ଭୋଳା ତୁ ଗୋଟାଏ କାମ କର ।

ଭୋଳା —କଅଣ ?

ରାମ —ତୁ ଯା ନୂଆ ବୋଉଙ୍କଠୁ ଦ'ଟା ଟଙ୍କା ମାଗିଆଣିବୁ ।

ଭୋଳା —ସେ କ'ଣ ଦେବେ ?

ରାମ —ହଁ ଦେବେ, ତାଙ୍କୁ କହିବୁ ତାଙ୍କ କଥାରେ ମୁଁ ରାଜି । ସେ ଟଙ୍କା ଦେଲେ ମୁଁ ଚାଲିଯିବି ତୁ-ଯା ।

ଭୋଳା —ହଉ, ମୁଁ ଆସିବା ଯାଏ ତେମେ ଏଇଠି ବସିଥିବ ।

(ଲୁଗା ପୁଡ଼ିଆଟା ରାମକୁ ଦେଇ ଚାଲି ଗଲା)

ରାମ —ଚଞ୍ଚଳ ଆସିବୁ ।

—* * *—

## ( ଚତୁର୍ଥ ଦୃଶ୍ୟ )

[ ଅଳନ୍ଦ, ରୁକ୍ମଣୀ ହାତରେ ଗୋଟାଏ ପଣତା ତାଳ ଧରି ଆସୁଛନ୍ତି—ବଡଘର ଦାଦାରୁ ଆସିଲେ ଦାଦାଙ୍କୁ ସେ ଗାଧୋଇ ବାହାରିଛନ୍ତି । ]

ଦାଦା —ପଣତା କାଟିବାକୁ ନେଉଚ ?

ରୁକ୍ —ହଁ ।

ଦାଦା —ନାଇଁ ତୁ ଯା ନେଲାକୁ ଡାକ ଦେ ସେ କାଟୁ ଥାଉ— ମୁଁ ଗାଧୋଇ ଆସିଲେ ଚୂଲି ଲଗାଇବ ।

ରୁକ୍ —ମୁଁ ଚୂଲି ଲଗେଇଲିଣି ବୋଉ ! —ଭାତ ଆସି ହେଲଣି ପରା !

ବାଗ — ଏଁ ! ! ! ତୁ ଶୁନବାନ ନେହଲ ଖାଇନୁ···ସକାଳୁ ଉଠି ଚାରେ କାଏ ରୋଷେଇ କରିବାକୁ କହିଲା ?

ରୁକ —କି କଥା ତୁ କହୁଚ, ଦୋଷ ? ରୋଷେଇ କରିବାକୁ ମତେ ପୁଣି କହିବ କାଏ ?

ବାଗ —କାହିଁକି, ମୁଁ ଗାଧୋଇ ଆସି ନ ଥିଲେ କ'ଣ ଚୁଲି ଲାଗେଇ ନ ଥାଆନ୍ତା ? ସବୁ କଥାରେ ତୋର ଏହି ଢଙ୍ଗ ?

ରୁକ —(ହସି ହସି) ନିଜ ଘର କାମ ନିଜେ କଲି । ଏଥିରେ ପୁଣି ଢଙ୍ଗ କ'ଣ ରହିଲା ! ! ତୁ ଯା ଗାଧୋଇ ଯା·····

ବାଗ —ହଉ ଲୋ ମା ! ଯାହା ତୋ ମନକୁ ଆଉଚି କର ! ମୋର କ'ଣ ଯାଉଚି ! (ଚାଲିଗଲେ, ଭିତରୁ ଶ୍ୟାମ ଆସିଲେ)

ଶ୍ୟାମ —ରମ କାହିଁ ଗଲା ?

ରୁକ —ସକାଳୁ ଉଠି କୁଆଡ଼େ ଯାଇଚ ?

ଶ୍ୟାମ —ତମ ରୋଷେଇ ବାସ ।

ରୁକ — ଏଇ ଘଡ଼ିକରେ ସବୁ ଘାର ଦେଉଚି !

ଶ୍ୟାମ —ଜମିଦାରଙ୍କ ବଡ଼ ପୋଖରୀରେ ଆଜି ଜାଲ ପଡ଼ୁଚି — ମୁଁ ପୁଣି ସେଠିକି ଯିବି । ହଁ, ତମ ବୋଉ କାହିଁ ଗଲେ ?

ରୁକ —ଗାଧୋଇ ଗଲାଣି ।

ଶ୍ୟାମ — ଗଲେଣିତ ?

ରୁକ —ହଁ କାହିଁକି ?

ଶ୍ୟାମ —ମୁଁ ଭାବୁଥିଲି, ଏ ବାଉଟା ରହୁ ନାହିଁ କ'ଣ ? ଏଥକ

ଦେଲେ ଯାଉଛ ବାଡ଼ିଟା ଉଠାଇ ହାଏ·····ହାଏ ଥିଲେ ପୁଣି ଅଉଆ । (ଯାଉଥିଲେ)

ରୁକ —ତୁମେ ବାଡ଼ିକୁ ଉଠେଇ ନେବ !—ଶୁଣ ବାଡ଼ି ତ ଉଠେଇ ଦେବ ଆଉ କେବେ ଯେମିତି ତୁମର ଏ ଭ୍ରମ ନ ହୁଏ ବୁଝିଲ !

ଶ୍ୟାମ —ହଁ ହଁ ବାଡ଼ିଟା ଉଠାଇ ନେବ ( ଶ୍ୟାମ ହସି ହସି ଚାଲିଗଲେ, ରୁକ୍ମଣୀ ଭିତରକୁ ଯିବାପରେ ଭୋଳା ଆସିଲା । )

ଭୋଳା —ମା (ରୁକ୍ମଣୀ ଫେରି ଆସିଲେ) ଓଃ ତମେ ଏଠି ଅଛ ।

ରୁକ —କିଏ ଭୋଳା—କ'ଣ କିରେ ଭୋଳା କ'ଣ ?

ଭୋଳା —ତମେ ସାନବାବୁଙ୍କୁ ଯାହା କହି ନ ଥିଲ ? ସେ ସେଥିରେ ରାଜି ।

ରୁକ —କିରେ କ'ଣ ?

ଭୋଳା —ହଁ ମା ସେ ସେଥିରେ ରାଜି, ଖାଲି ଦି'ଟା ଟଙ୍କା··· !

ରୁକ —ଆରେ କ'ଣ ମୁଁ ତାକୁ କହିଥିଲି ? ଟଙ୍କା—ଟଙ୍କା କ'ଣ ହବ ତାର ?

ଭୋଳା —ତମେ ତାଙ୍କୁ ଏଠୁ ଚାଲି ଯିବାକୁ କହି ନ ଥିଲ ? ଗାଡ଼ି ଭଡ଼ା ପାଇଁ ଖାଲି ଦିଟା ଟଙ୍କା ହେଲେ ସେ ଚାଲି ଯିବେ ।

ରୁକ —ସେ ଚାଲି ଯିବ ? କୋଉଠିକି ?

ଭୋଳା —କୋଉ ଦେଶ ମା, ତାଙ୍କ ମାମୁଁ ଘରକୁ । ତମକୁ ଦିଟା ଟଙ୍କା ମାଗିଛନ୍ତି ।

ରୁକ —ତୁ ଏଇ ଖବର ଦେବାକୁ ମତେ ଆସିଥିଲୁ ! କାହିଁ

ଗଲ୍ଲ ସେ ? କୋଉଠି ଅଛୁ (ଡାକଲେ)—ବୁମ—ବୁମ—ବୁମ— ।

ଝୋଲା —ସେ କ'ଣ ଏଠି କୋଉଠି ଅଛନ୍ତି ?

ରୁକ —ଆଉ ?

ଝୋଲା —ଲୁଗାପଟା ଧରି ଯାଇ ସେ ଘରେଇ ଯାଇ ମୁଣ୍ଡରେ ବଇଚନ୍ତି ?

ରୁକ —ଘରେଇ ଯାଇ ମୁଣ୍ଡରେ ବଇଚ ? ଏ ବୁଦ୍ଧି ତାକୁ କିଏ ଦେଲା ? ସେ ଘର ଛାଡ଼ି ଯିବାକୁ ବାହାରିଲାଣି (ଭିତରକୁ ଉଦ୍ଦେଶ୍ୟ କରି) । ଏବେ ଶୁଣୁଛ, ଆରେ ଶୁଣୁଚୁ (ସଙ୍ଗେ ସଙ୍ଗେ ପୁଣି ଝୋଲାକୁ) ଝୋଲା ତୁ ଯା ତାକୁ ଡାକ ଆଣିବୁ ।

ଝୋଲା —ଡାକ ଆଣିବି ମା ?

ରୁକ —ହଁ, କହିବୁ ତମ ନୂଆ ବୋଉ ଡାକୁଛନ୍ତି ଅଯ ।

ଝୋଲା —ସେ କ'ଣ ଆସିବେ ମା ?

ରୁକ —ଆସିବରେ ଆସିବ ! ତୁ ଆଗେ ଗଲୁ । ତ ନୂଆ ବୋଉ ଡାକୁଚ । ଶୁଣିଲେ ସେ ଉ ଆସି ରହି ପାରିବ ନାହିଁ, ତୁ ଯା (ଝୋଲା ଚାଲିଗଲା) ଟଙ୍କ ଦୌଡ଼ ଦୌଡ଼ ଯା ।

—* * *—

## ( ଶେଷ ଦୃଶ୍ୟ )

[ଅଗଣା—ବାଜଣା ଉଠି ଯାଇଛି—ନେତ ଦୁଆର ଓଳାଉଛି]

ନେତ —(ମନକୁ ମନ) ଏ ତିନି ଦିନ ମିଛିଟା ମଣିଷକୁ କିନ୍ତୁ ଧକା ଲାଗୁଚି, ଖାଇ, ଖାଇବେ ଦିନେ ନେଇ ମନ୍ କେମିତି ଚଳନ୍ତି କେ ମା ? (ବାହାରକୁ ଚାହିଁ ଦେଇ) ହେଇଟି ମା ସାନବାବୁ ଆଇଲେଣି ଦୌଡ଼ି ଆସ ! ଦଉଡ଼ି ଆସ ଦେଖିବ । (ଏ ପାଖରୁ ରାମ ଓ ଖେଳା, ସେ ପାଖରୁ ରୁକ୍ମଣୀ ପ୍ରାୟ ଏକ ସାଙ୍ଗରେ ଆସିଲେ)

ରୁକ —ଆଇଲୁଣି··· । କାହିଁକି ଆଉ ଆସିଲୁ ? ନୂଆ ବୋଉ ବଞ୍ଚିଚି କି ମରିଚି ଦେଖିବାକୁ । (ରୁକ୍ମଣୀ ମୁହଁ ବୁଲାଇ ଲୁହ ପୋଛୁଥାନ୍ତି । ରାମ ଆଗେଇ ଆସିଲା )

ରାମ —ନୂଆ ବୋଉ । (ପ୍ରଣାମ କଲା)

ରୁକ —କେମିତି ତୋ ମନ ହୋଇ ଥିଲାରେ । ତିନି ଦିନ କାଳ ମତେ ଭୁଲି କରି ରହିଥିଲୁ (ହାତଧରି ଭିତରକୁ ନେଇ ଗଲେ)

ଖେଳା —(ଖୁସି ମନରେ) ଦେଖିଲୁଟି ନେତ ନାନୀ କାଏ କଳିବ ଯାଙ୍କୁ ଦିଅର ଭାଉଜ ! ନିଜ ମା ମନର ଏମିତି ଚଟିବ ନାହିଁ ?

ନେତ —ସତେ ବା ଖେଳା, ମୁଁ ପର ମନକୁ ମନ ଭାବେ, ଆମ ସାନବାବୁ ନ ଥିଲେ ମା ଆମର ଚଳନ୍ତେ କିମିତି ? ଏଇ ହୋ ହୋ, ଯୋ ଯୋ, ତାଙ୍କୁ ଯେମିତି ଭଲ, ଯାଙ୍କୁ ସେମିତି ।

ଭୋଲା —କଥାଟାକୁ ଅଧାକରି ଗୁଡ଼ ଦେଲୁ ତାଙ୍କ ନାମ। ସଫାର କହିବୁ ସ୍ୱାଙ୍କୁ ଭଲ, ତାଙ୍କୁ ଭଲ, ନେତ ଭଲ, ତେତେ ଭଲ। ଖାଲି ଯାହା (ବାହାରକୁ ଚୁହିଁ) ହେଉଛି ଲୋ ନାମ ଆଉଲେଣି !

ନେତ —କିଏ କରେ ?

ଭୋଲା —ଦେଖ ବଡ ମା ଗୁଳରେ ଲୁଗା ଶୁଖାଉ 'ଚନ୍ଦ୍ର ।

ଧଗ —(ବାହାରୁ ସ୍ୱର ଲମ୍ବାଇ) ନେତ ! ନେତ !

ନେତ —(ସ୍ୱର ଲମ୍ବେଇ) କ'ଣ । (ଖୁସି ମନରେ ଦରମ୍ବସ୍ତ ଭୋଲା ଉପରେ ତାଙ୍କ ଆଖି ପଡ଼ ନ ଥାଏ)

ଧଗ —ତୁ ଶୁଣିଲୁଟି ନେତ ?

ନେତ —କ'ଣ ?

ଧଗ —(ଦୁଆରେ ବାଡ଼ ନ ଦେଖି) ଇଲେ ଏ ବାଡ଼ଟା କ'ଣ କିଏ ଉଠାଇ ନେଲାଣି ?

ନେତ —ବଡ଼ ବାବୁ ନିଜେ ପରା ?

ଧଗ —ଏଁ ଶାମ ଉଠେଇ ଦେଇଛି . (ଯେମିତି ଖୁସି ମନରେ) ଶାମର ତେବେ ଏ ବୁଦ୍ଧି ହେଲା ।

ନେତ —ତେମେ କି କଥା କହୁଛ ମା, ସେ ଭଲରେ ଘର କରିଛନ୍ତି ।

ଧଗ —ଆଲୋ ସେ ନେମା ଜ୍ୱାଇଁଟି···ଜମିଦାର ଘରେ ଯଦାର ଗୁମାସ୍ତା—ତା ବୁଦ୍ଧି କାହାର ଅଛି ଟା ? (ସ୍ୱର ବଦଳାଇ) ସେଇଟାର କୁଆଡ଼େ ଚଳାଇ ଗଲାଣି, ଇଏ ଏବେଣେ ବାଡ଼ ଉଠାଇ ଘର ଦ୍ୱାର ସବୁ ଦଖଲକୁ ନେଇ ଗଲେ ପାଠ ସରିଲା ?

ନେତ —ତେବେ କାହା କଥା କହୁଛ ମା ?

ଦାଗ —ମଲା ତୁ ଆଉ ବୁଝୁଚୁ କ'ଣ ? ଏ ବୁଡ଼ି ନ ପାନ୍ତୁଣୁ ପର ଝିଅ ଭୋଳା ସଙ୍ଗରେ କୁଆଡ଼େ ପଳେଇଛଲାଣି ସେଇଥିପାଇଁ ରୁକୁଣା ଭଥ ଅଣ ଲେଉଟା—ଆଉ କ'ଣ ଫେରିବ ?

ନେତ —(ହସ ସମ୍ଭାଳି ନ ପାରି)...ମୁଁ ଆଉ ପାରିବି ନାହିଁ ଲୋ ମା...ଶୁଣୁଚୁ ଟିକେ ଭୋଳା !

ଦାଗ —ଏଁ ଭୋଳା ? ? ? (ଭୋଳାକୁ ଦେଖି) ହଇରେ ତୁ କଅଣ ଏଠି ।

ଭୋଳା —ଆଉ କୁଆଡେ଼ ଯିବ ମା ? ଯିବାଟି ବାବୁ ତ ଏ ଘରେ ଆସି ବାଳ ପାରିଲାଣି ! ! !

ନେତ —ଖାଲି କଅଣ ଭୋଳା ! ! ହେଇ ସେ ଘରକୁ ଦେଖିଲ —ରୁକୁଣା ରଥ ଲେଉଟା କି ଅଣ ଲେଉଟା ? ? ?

ଦାଗ —(ଅନ୍ତରାଳରେ ବାମକୁ ଦେଖି) ଏଁ ହଇରେ ଭୋଳା ! ସେ ପୁଣି ଏ ସାଙ୍ଗରେ କେମିତି ଆସିଲା ?

ଭୋଳା —ମା ଡାକିଥିଲେ—ସେ ଗଲେ—ମୁଁ ଏବେ କଅଣ କରିବି ।

ଦାଗ —ମା ଡାକିଥିଲେ ? ରୁକ—ରୁକ—(ଡାକିଲେ) (ରୁକ ଆସିଲେ ପଛେ ନଚେ ଚୋବନ ଓ ଧୁଙ୍ଗ ) ଏକା ନବରଙ୍ଗ ଲଟିରି କଲେ ରୁକ ?

ରୁକ —ସବୁ ତ ଶୁଣିବୁଣି ନୋଉ ?

ଦାଗ —ମତେ ଆଉ ଶୁଣା ନା ବା ! ଏଇ ଠାକୁରଙ୍କ ମନେଣାଇ ପାଇଁ ସକାଳୁ ଉଠି, ନ ଖାଇ, ଛ ଭଜା କରୁଛୁ । ଧାଇଲେ ରୁକ ତୋ ରେବନ୍ତ ନାସୁମ ଦେଇଥିଲ—ତୁ ତାକୁ ମନେପଡ଼ି ଦେଲୁ ?

ରୁକ —ମତେପର ଦେଖ କାଇଁକି ? ନିୟମ ଦେଇଥିଲେ ବୋଲିତ ତିନି ଦିନ ନିଜେ ଖାଇନି କି ରାମକୁ ଖାଇବାକୁ ଦେଇନି ।

ଦଗ —ଓ—ଶାମ ନିଜେ ତା ହେଲେ ଏଥିରେ ଅଛି ?

(ଶାମ ଆସିଲେ)

ଶାମ —କୁଆଡେ ଗଲୁ କି ?

ରୁକ —କଅଣ ?

ଶାମ —ରାମକୁ ଖାଇବାକୁ ଦେଲଣି ?

ରୁକ —ନାଁ ।

ଶାମ —ଜମିଦାର ଘର ହଣ୍ଡାଏ ପାଣିରେ ଗୋଟାଏ ବଡ଼ ଜିଅନ୍ତା ବୋଆ ମାଛ ପଠାଇ ଦେଇଛନ୍ତି ।

ଭୋଲା —ସେଇଟାକୁ ବାବୁ ଆମ ପୋଖରୀରେ ଛାଡ଼ି ଦେବା··· ସାନବାବୁଙ୍କ କାର୍ତ୍ତିକ ସାଙ୍ଗକୁ ଗଣେଶ ହୋଇ ରହିବ ।

ଶାମ —ହଉ ତେବେ ତୁ ନେଇ ଛାଡ଼ି ଦେଇ ଆ, ଯା !

ଭୋଲା —ସାନବାବୁ ତେମେ ଖାଇସାରି ପୋଖରୀ କୂଳକୁ ଆସ । ଚାଲିଗଲା ।

ଶାମ —ତେମେ ପିଲଙ୍କୁ ଖାଇବାକୁ ଦିଅ, ମୁଁ ଟିକିଏ କଚେରି ଆଡୁ ଆସେ । (ଚାଲିଗଲେ)

ଦଗ —ହଁ ସତିଏ ତା ହେଲେ ଏକ ମେଳ ହୋଇଚ ?

ରୁକ —ଘର ପୁଅ ଘରକୁ ଆସିଲା —ଏଥିରେ ମୋ ମେଳକଥା କ'ଣ ଅଛି, ହଁ ବୋଉ ତୁ ଗାଧୋଇ ଆସିଲୁଣି— ପୂଜା ପୂଜି କାମ ସାରି । ଛୁଆଟା ତିନିଦିନ ହେଲା ଖାଇନି ମୁଁ ତାକୁ ଦି'ଟା ଖୋଇ ଦିଏ ?

ଦଗ —ହଁ ଯିବି ଏକା ବେଳକେ ଯିବି—ଆଜି ପୂଜା ପୂଜି

କରିବ କ'ଣ ମୁଁ ସେପା କଥା କହୁଚି ରୁକ ମୁଁ ଆଉ ଏଠି ରହି ପାରିବି ନା ।

ଝୁନ —ତୁଚ ସବୁ କଥା ଦେଖୁଚୁ ବୋଉ ! ମୁଁ ଆଉ ଅଧିକା କ'ଣ କହିବି ? ମରିଗଲେ ବି ମୁଁ ବାପକୁ ମୋ ପାଖରୁ ଛାଡ଼ିବି ନାହିଁକି ସେ ମତେ ଛାଡ଼ି ରହି ପାରିବେ ନାହିଁ ତୁ ସବୁ ଘରକୁ ଯିବାକୁ କହୁଚୁ, ଯା—ସବୁ ଖର୍ଚ୍ଚ ମୁଁ ତୁଟେଇବି ନାହିଁ ସବୁ ତୋ ମନ ହେଉଚି ଏମିତି ରହ । ତତେ ଯାହା ଭଲ ଦିଶୁଚି କର !

ଢେଙ୍ଗ —ଭଲ ! ମୋ ଭଲ ଆଉ କିଏ ଦେଖୁଚି ଚା, କାଲି ସୁଖ ସେଠି ମୁହଁକୁ ମୁଁହ ଯୋଡ଼ି ଟିଆ ହୋଇଚ କାହିଁକି ? ( ଚାଣିଆଣି ) ପୋଡ଼ା ମୁହଁର ଯୁଆଗ ଉଛୁଳ ପଡୁଚି । ଯା ତେଣେ ଲୁଗାପଟା ବିଷ୍ଣୁ ସଜିଲ କର ।

ନେଲୁ —ତେବେ କ'ଣ ଏଇନେ ଯିବ ମା !

ଢେଙ୍ଗ —ହିଁ ଏଇନେ ଯିବ ।

ରାମ —ତାଙ୍କୁ କୁହ ନୂଆ ବୋଉ, ସେ ରୁହନ୍ତୁ । ମୁଁ ଏଣିକି ଭଲ ହେବି, ଭଲ ବୁଦ୍ଧି କରିବି । ତାଙ୍କୁ ଆଉ କଷ୍ଟ କହିବି ନାହିଁ ।

ଝୁନ —ରାମ କ'ଣ କହୁଚି ? ଶୁଣୁଚୁଟି ବୋଉ । (ଶୁଣି ନ ଶୁଣିଲା ପରି, ସୁଖକୁ ।) କଲେ ତୁ ଠିଆ ହୋଇ କ'ଣ ଦେଖୁଚୁକି, ଯାଉନୁ ।

ରାମ —(ଆଗେଇ ଯାଇ) ମୁଁ ସବୁ କହିଲି ମୁଁ ଏଣିକି ଭଲ ବୁଦ୍ଧି କରିବି । ତମକୁ ଆଉ କଷ୍ଟ କହିବି ନାହିଁ ।

ରୁକ —ବୋଉ !

ଦିଗ —କ'ଣ କହୁଚୁ ?

ନେତ —ସାନବାବୁ ପର ଏତେ କଣ କହୁଚନ୍ତି । ମା—ତାଙ୍କ କଥା ରଖିବ ନାହିଁ ?

ରାମ —ଆ ସୁଷ ମୋ ସାଙ୍ଗରେ ଖାଇବୁ ଆ ।

ସୁଷ —ପିଇବ ବୋଉ ? (ଦିଗମୁହଁ ଚୁଟି ଦେଇ ବୁଲିଗଲେ)

ଟୁକ —ସୁଷ ପର କଅଣ ପଚାରୁଚ ବୋଉ ?

ରାମ —ସୁଷ ଆ...... (ହାତଧର)

ସୁଷ —ବୋଉ ପିଇବ ?

ଲୋଳା — ମା, ମା ତମେ ସାନବାବୁଙ୍କୁ କୋଳକୁ ପୁଅଟେର ଟେ କହଅ—ମୋ ସାନବାବୁ ପର କହିଲେଣି ଏହିକ ଭଲ ହେବେ ।

ରାମ —ମୁଁ ପୁଣି ଥରେ କହୁଚି ମୁଁ ଭଲ ବୁଦ୍ଧି କରିବି ଆ— (ପ୍ରଣାମ କଲା)

ସୁଷ —ବୋଉ ।

ଦିଗ —ପିବୁଡ ପିବୁ । ମତେ ଆଜ ପଚାରୁଚୁ କଅଣ ? ପିବୁଡି ଲେ ନେତ ଠାକୁର ବାସନ ଦି'ଖଣ୍ଡ ମାଜି —ଦବୁ ।

ନେତ —ମାଜି ସାରିଚି ମ ଦେଉ ମା । ତମେ ଆସ ।

(ହାତଧରି ଧର ଆଜକୁ ନେଇଗଲା)

ଟୁକ —ତୁ ଚଞ୍ଚଳ ଚୂଜ ସାରି ଆ ବୋଉ, ପିଲଙ୍କ ସାଙ୍ଗରେ ଖାଇ ବସିବୁ ।

—* * *—